ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଗ୍ରୀସ୍ ଦେଶର କାହାଣୀ





ଗ୍ରନ୍ଥମନ୍ଦିର

ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଗ୍ରୀସ୍‌ଦେଶର କାହାଣୀ

ଅନୁବାଦକ :
ଅଧ୍ୟାପକ ଶ୍ରୀଧର ଦାସ

ଗ୍ରନ୍ଥମନ୍ଦିର

# ସୂଚୀ

# ମେଡୁସାର ମୁଣ୍ଡ

ଦାନେ ଥିଲେ ଜଣେ ରାଜାଙ୍କ ଝିଅ । ସେ ରଜାଘରେ ମଧ୍ୟ ବନ୍ଦୀ ହୋଇଥିଲେ । ତାଙ୍କର ଗୋଟିଏ ସୁନ୍ଦର ପୁଅ ହେଲା । ପୁଅଟିର ନାମ ଦିଆଗଲା ପର୍ସିଅସ । ଦାନେ ପୁଅଟିକୁ ନେଇ ସୁଖରେ ଥିଲେ । କିନ୍ତୁ ଦୁଷ୍ଟଲୋକେ ତାଙ୍କ ସୁଖ ଦେଖି ସହିପାରିଲେ ନାହିଁ । ସେମାନେ ମାଆ-ପୁଅ ଦୁହିଁଙ୍କୁ ଗୋଟିଏ କାଠ ବାକ୍ସରେ ପୂରାଇ ସମୁଦ୍ରରେ ଭସାଇଦେଲେ ।

ଦାନେ ପୁଅଟିକୁ କୋଳରେ ଧରି ବାକ୍ସ ଭିତରେ ପଡ଼ିଥାନ୍ତି; ଏଣେ ବାକ୍ସ ସମୁଦ୍ର ଉପରେ ଭାସି ଭାସି ଯାଉଥାଏ । ବାକ୍ସଟି ଯାଇ ଏକ ଦ୍ୱୀପରେ ଲାଗିଲା । ଏହି ଦ୍ୱୀପର ନାମ ସେରିଫସ୍ । ଜଣେ କେଉଟ ସେଠାକୁ ଜାଲ ଘେନି ମାଛ ଧରିବାକୁ ଆସିଥିଲା । ସେ ବାକ୍ସଟିକୁ ଉଠାଇ ନେଇ ଦେଖିଲା, ତା ଭିତରେ ଗୋଟିଏ ସ୍ତ୍ରୀଲୋକ ନିଜ ପିଲାକୁ ଧରି ଶୋଇଛି । କେଉଟ ବାକ୍ସରୁ ମାଆ-ପୁଅଙ୍କୁ ବାହାରକରି ନିଜ ଘରକୁ ନେଲା ଓ ଅତି ଯତ୍ନରେ ରଖିଲା । ଦିନପରେ ଦିନ, ବର୍ଷପରେ ବର୍ଷ ଗଡ଼ି ଚାଲିଲା । ପର୍ସିଅସ ଗୋଟିଏ ସୁନ୍ଦର ବଳିଷ୍ଠ ଯୁବକ ହେଲେ । ଖଣ୍ଡା ଚାଳନା କରିବାରେ ସେ ଖୁବ୍ ନାଁ ଅର୍ଜିଲେ ।

ଏହି କେଉଟର ଭାଇ ଦୁଷ୍ଟ ପଲିଡେକ୍ଟସ ସେ ଦ୍ୱୀପର ରାଜା । ସେ ଦେଖିଲା, ପର୍ସିଅସ୍ ଗୋଟିଏ ସୁନ୍ଦର ବଳିଷ୍ଠ ଯୁବକ । ତାଙ୍କର କିପରି ଅନିଷ୍ଟ ହେବ ସେଥିପାଇଁ ସେ ଉପାୟ ଚିନ୍ତାକଲା । ସେ ଦିନେ ପର୍ସିଅସଙ୍କୁ ଡକାଇଆଣି କହିଲା, "ଦେଖ ପର୍ସିଅସ, ତୁମକୁ ଆମେ ବହୁତ ସାହାଯ୍ୟ କରିଛୁ । ମୋ ଭାଇ ତୁମକୁ ଓ ତୁମ ମାଆକୁ ପାଳିଆସିଛନ୍ତି । ଏବେ ତୁମେ ଆମପାଇଁ କିଛି କରିବା ଦରକାର ।"

ପର୍ସିଅସ୍ ଉତ୍ତର ଦେଲେ, "ମହାରାଜ, ଆପଣ ଏ ଦ୍ୱୀପର ରାଜା । ମୁଁ ଆପଣଙ୍କଠାରେ ବିଶେଷ ଋଣୀ । ଆପଣ ଯାହା ଆଦେଶ ଦେବେ ତାହା ନିଶ୍ଚୟ କରିବି । ଏପରିକି ସେଥିରେ ପ୍ରାଣ ଗଲେ ମଧ୍ୟ ମୁଁ ତାହା କରିବାକୁ ପ୍ରସ୍ତୁତ ।"

ପଲିଡେକ୍ଟସ କହିଲା, "ତମେ ଶୁଣିଥିବ, ନିକଟରେ ମୋର ବିଭାଘର ହେବ । ରାଜକନ୍ୟା ହିପୋଡେମିଆଙ୍କୁ ବିବାହ କରିବା ପୂର୍ବରୁ ସେ ମୋ'ଠାରୁ

ଗୋଟିଏ ଉପହାର ଗୃହାନ୍ତ । ଅନ୍ୟ କୌଣସି ଉପହାରରେ ସେ ସନ୍ତୁଷ୍ଟ ହେବେ ନାହିଁ । ତୁମେ ଜାଣିଥିବ, ଆମ ରାଜ୍ୟରେ ତିନୋଟି ରାକ୍ଷସୀ ଅଛନ୍ତି । ସେଥିରୁ ଗୋଟିକର ନାମ ମେଡୁସା । ସେହି ମେଡୁସାର ମୁଣ୍ଡଟି ତାଙ୍କୁ ଉପହାର ଦେବାକୁ ହେବ । ତୁମେ ଯାଇ ମେଡୁସାର ମୁଣ୍ଡଟି କାଟିଆଣି ମୋତେ ଦେବ ।"

ପର୍ସିଅସ୍ କହିଲେ, "ଏପରି ଗୋଟିଏ କଠିନ କାର୍ଯ୍ୟର ଭାରନେବା ମୋର ଭାଗ୍ୟ । ମୁଁ କାଲି ମେଡୁସାର ମୁଣ୍ଡ ଆଣିବାକୁ ଯିବି ।" ଏହାକହି ପର୍ସିଅସ୍ ରାଜାଙ୍କ ପାଖରୁ ଚାଲିଗଲେ । ରାଜା ହସି ହସି ମନକୁ ମନ କହିଲେ, "ଟୋକାଟା ଜାଣିନାହିଁ, ତା ମରଣ ନିକଟ ହେଲାଣି । ମେଡୁସା ପାଖକୁ ଯିବା ତ ଅସମ୍ଭବ, ଏ ତାକୁ ମାରି ତାର ମୁଣ୍ଡ ଆଣିବ କିପରି ?"

ସେ ରାଜ୍ୟରେ ତିନୋଟି ରାକ୍ଷସୀ ଥିଲେ । ସେମାନଙ୍କ ଭଳି ଭୀଷଣ ବିକଟ ଜୀବ କେଉଁଠି ଦେଖାନଥିଲେ । ଏ ତିନି ରାକ୍ଷସୀ ହେଉଛନ୍ତି ତିନିଭଉଣୀ । ଏମାନେ ଆଦୌ ମଣିଷପରି ଦେଖାଯାଉନଥିଲେ । ତାଙ୍କ ଦେହରେ ଚମଡ଼ା ନଥିଲା; ଥିଲା ଲୁହାର ପଟ । ତାଙ୍କ ମୁଣ୍ଡରେ ଗୁଡ଼ାଏଲେଖାଏଁ ସାପ ବାଳପରି ଓହଳିଥାନ୍ତି । ସାପଗୁଡ଼ାକ ଗୁଡ଼େଇତୁଡ଼େଇ ହୋଇ ସୁ-ସୁ ଶବ୍ଦ କରୁଥାନ୍ତି । ଲମ୍ବ ଲମ୍ବ ଜିଭ ଲହ ଲହ ହେଉଥାଏ । ରାକ୍ଷସୀଙ୍କ ଦାନ୍ତଗୁଡ଼ାକ ବାଘର ଦାନ୍ତ ପରି । ହାତ ଉପରେ ଚମଡ଼ା ନଥାଇ ଥାଏ ପିତଳର ପଟ । ଆଙ୍ଗୁଠିଗୁଡ଼ାକ ଗୋଜା ଗୋଜା, ଶଲଚ୍ଛ ନଖପରି । ଆହୁରି ଆଶ୍ଚର୍ଯ୍ୟର କଥା, ସେମାନଙ୍କର ସୁନାର ଡେଣା ଥାଏ, ତା ଉପରେ ସୂର୍ଯ୍ୟକିରଣ ପଡ଼ିଲେ ଚକ୍ ଚକ୍ ଦିଶେ । ଏହାରି ସାହାଯ୍ୟରେ ସେମାନେ ସହଜରେ ଉଡ଼ିପାରନ୍ତି । ସବୁଠାରୁ ବଡ଼ ବିପଦ ହେଉଛି, ଯଦି କେହି ମେଡୁସାକୁ ଚାହିଁଦେବ ସେ ତତ୍‌କ୍ଷଣାତ୍ ପଥର ପାଲଟିଯିବ । ତେଣୁ ରାକ୍ଷସୀମାନେ ଉଡ଼ିଯିବାବେଳେ ମଣିଷମାନେ ଲୁଚିରହନ୍ତି, କାଳେ ସେମାନଙ୍କୁ ଦେଖିପକାଇବେ ।

ଏପରି ଭୀଷଣ ରାକ୍ଷସୀକୁ ମାରିବାକୁ ଯିବା ଯେ କେଡ଼େ କଠିନ କାମ ତାହା ସହଜେ ଅନୁମାନ କରାଯାଇପାରେ । ଏପରି ଗୋଟାଏ ବିପଦପୂର୍ଣ୍ଣ କାମ କରିବାକୁ ଯାଉଛନ୍ତି ବୋଲି ପର୍ସିଅସ୍ ମାଆଙ୍କୁ ମଧ୍ୟ କହିଲେ ନାହିଁ । ସେ ଆପଣା ଢାଲ ଓ ଖଣ୍ଡା ଧରି ବାହାରିପଡ଼ିଲେ । ସେ ଗୋଟିଏ ଗଛମୂଳେ ବସି କଅଣ କରିବେ ଚିନ୍ତାକଲେ । ମେଡୁସାକୁ ମାରିବାର କୌଣସି ଉପାୟ ଦେଖା

ଗଲା ନାହିଁ । ସେ ମୁଣ୍ଡପୋଡ ଭାବୁଥିଲେ ଏହି ସମୟରେ ଶୁଣିପାରିଲେ କେହି କହିଲା—ପର୍ସିଅସ, ତୁମେ ଏତେ ମନଦୁଃଖରେ ବସିଛ କାହିଁକି ? ପର୍ସିଅସ୍ ମୁହଁ



ଟେକି ଦେଖିଲେ, ତାଙ୍କ ଆଗରେ ଜଣେ ସୁନ୍ଦର ଯୁବକ ଠିଆ ହୋଇଛନ୍ତି । ଯୁବକଟି ଯେ ଖୁବ୍ ସାହସୀ ଓ ବୁଦ୍ଧିମାନ୍ ସେକଥା ତାଙ୍କ ଚେହେରାରୁ ଜଣା-ପଡ଼ୁଥାଉଥିଲା । ତାଙ୍କ ମୁଣ୍ଡରେ ଗୋଟିଏ ବଡ଼ଣ ଟୋପି ଓ ହାତରେ ଗୋଟିଏ

ଝଟଝ ବାଡ଼ । ତାଙ୍କ ଅଣ୍ଟାରୁ ଗୋଟିଏ ଖଣ୍ଡା ଝୁଲୁଥିଲ । ମୁହଁଟି ତାଙ୍କର ହସ ହସ— ଯତେ ଯେପରି ପର୍ସିଅସକୁ ସାହାଯ୍ୟ କରିବାକୁ ସେ ସ୍ୱର୍ଗରୁ ଓହ୍ଲାଇ ଆସିଛନ୍ତି ।

ପର୍ସିଅସ୍ ଉତ୍ତର ଦେଲେ, "ମୁଁ ଗୋଟାଏ ଅସାଧ୍ୟ କାମ କରିବାକୁ ଆସିଛି । କପରି କଅଣ କରିବ ସେଇକଥା ଭାବୁଛି ।"

ଯୁବକ କହିଲେ—"କେତେ ଲୋକଙ୍କୁ ମୁଁ ନାନା ଅସାଧ୍ୟ କାମରେ ସାହାଯ୍ୟ କରିଛି । ସେମାନେ ଶେଷରେ ସଫଳ ହୋଇଛନ୍ତି । ତୁମେ ମୋର ନାଆଁ ଶୁଣିଥିବ । ମୁଁ ହେଉଛି ମର୍କ୍ୟୁରି । ଆଚ୍ଛା, ତୁମେ କଅଣ କରିବାକୁ ଚାହଁ ମୋତେ କହ । ହୁଏତ ମୁଁ ତୁମକୁ ସାହାଯ୍ୟ କରିପାରିବ ।"

ପର୍ସିଅସ୍ କହିଲେ—ରାଜା ପଲିଡେକ୍ଟସ ତାଙ୍କୁ ମେଦୁସାର ମୁଣ୍ଡଟି କାଟି ନେବାକୁ କହିଛନ୍ତି; କିନ୍ତୁ ତାକୁ ଚାହିଁଲ ମାତ୍ରେ ଯେ ପଥର ପାଲଟିଯିବେ, ତାକୁ ମାରି ମୁଣ୍ଡ ନେବେ କପରି ?

ମର୍କ୍ୟୁରି ହସି ହସି କହିଲେ—ମୁଁ ତାର ଉପାୟ କହିବ । ପ୍ରଥମେ ଆମକୁ ତିନିଜଣ ସ୍ତ୍ରୀଲୋକଙ୍କ ପାଖକୁ ଯିବାକୁ ହେବ । ଏ ତିନିଜଣଙ୍କର ଗୋଟିଏ ମାତ୍ର ଆଖି । ଏଇ ଆଖିଟିକୁ ସେମାନେ ପାଳିକରି ବ୍ୟବହାର କରନ୍ତି ।

ପର୍ସିଅସ୍ କହିଲେ, "ଆମର ମେଦୁସାର ମୁଣ୍ଡ ଦରକାର—ଏ ସ୍ତ୍ରୀଲୋକଙ୍କ ପାଖରେ ଆମର କି କାମ ?" ମର୍କ୍ୟୁରି କହିଲେ,"ତୁମେ ଭାବୁଛ ଏକାବେଳକେ ମେଦୁସା ପାଖକୁ ଚାଲିଯିବ । ସେକଥା କଣ ସମ୍ଭବ ? ସେଥିପାଇଁ ଆଗରୁ ଅନେକ କାମ କରିବାକୁ ପଡ଼ିବ । ଆଗେ ତୁମର ଢାଲଟାକୁ ମାଜି ଖୁବ୍ ଚକ୍ ଚକ୍ କରିଦିଅ; ଯେପରିକି ସେଥିରେ ଚାହିଁଲେ ଦର୍ପଣରେ ଦେଖିଲପରି ତୁମର ମୁହଁ ଦେଖାଯିବ ।"

ପ୍ରଥମେ ପର୍ସିଅସ୍ ଭାବିଲେ ଯେ ଢାଲକୁ ମାଜି ଚକ୍ଚକ୍ କରିବା ଏକ ବୃଥା ଶ୍ରମ ଛଡ଼ା ଆଉ କିଛି ନୁହେଁ । ଢାଲଟି ଖୁବ୍ ମଜଭୁତ ହେବା ଦରକାର—ଶତ୍ରୁର ହତିଆର ଯେପରି ତାକୁ ଭେଦିପାରିବ ନାହିଁ—ଖାଲି ଚକ୍ଚକ୍ ଦିଶିଲେ କି ଲାଭ ? ଯାହାହେଉ ସେ ମନଦେଇ ଢାଲଟିକୁ ମାଜିବାରେ ଲାଗିଲେ । କିଛି ସମୟ ପରେ ଏହା ଦର୍ପଣପରି ଚକ୍ଚକ୍ ଦିଶିଲା । ମର୍କ୍ୟୁରି ସେଥିରେ ନିଜର ଛବି ଦେଖିପାରି ଖୁବ୍ ଖୁସିହେଲେ । ତାପରେ ସେ ନିଜର ପୋଷାକ ଓ ଖଣ୍ଡା ପର୍ସିଅସଙ୍କୁ ଦେଇ ତାଙ୍କ ପୋଷାକ ଓ ଖଣ୍ଡା ନେଇଆସିଲେ ।

ଦୁହେଁ ଏହିପରି ପ୍ରସ୍ତୁତ ହୋଇ ବାହାରିପଡ଼ିଲେ । ମର୍କ୍ୟୁରି ଏତେ ବେଗରେ ଚାଲୁଥାନ୍ତି ଯେ ପର୍ସିଅସ୍ ବହୁତ ପଛରେ ପଡ଼ିଯାଉଥାନ୍ତି । ପଛରେ ଦଉଡ଼ ଦଉଡ଼ ପର୍ସିଅସ ହାଲିଆ ହୋଇଗଲେ । ମର୍କ୍ୟୁରି ତାହା ଜାଣିପାରି ଛିଡ଼ାହୋଇଗଲେ । ପର୍ସିଅସ ପାଖକୁ ଲଗିଆସିବାରୁ ସେ ଆପଣା ବାଡ଼ିଟି ତାଙ୍କ ହାତକୁ ବଢ଼ାଇଦେଇ କହିଲେ, "ଏଇଟି ତୁମର ଦରକାର, ଧର ।"

ଦୁହେଁ ପୁଣି ଚାଲିଲେ । ବାଡ଼ି ଧରିବାବେଳୁ ପର୍ସିଅସ୍ଙ୍କ ଦେହରେ ନୂଆ ବଳ ଆସିଥିଲା । ସେ ଆଉ ମୋଟେଇଭଳି ହାଲିଆ ହୋଇପଡ଼ୁନଥିଲେ । କିଛି ଦୂର ଯିବାପରେ ସେମାନେ ସେହି ତିନିଜଣ ସ୍ତ୍ରୀଲୋକଙ୍କୁ ଭେଟିଲେ । ପର୍ସିଅସ ଦେଖିଲେ, ତିନିଭଉଣୀଙ୍କର ଗୋଟିଏ ମାତ୍ର ଆଖି । ଯାହାର ଯେତେବେଳେ ଦରକାର ସେ ଆଖିଟି ବ୍ୟବହାର କରି ଦେଖେ—ଆଉ ଦୁଇଜଣ ସେତେବେଳେ କିଛି ଦେଖିପାରନ୍ତିନାହିଁ । ଜଣେ ଆଖିଟି କାଢ଼ି ଆଉ ଜଣକୁ ବଢ଼ାଇଦେବାକୁ ଯାଉଥିବାବେଳେ ପର୍ସିଅସ ତା ହାତରୁ ଆଖିଟି ନେଇଆସିଲେ । ଏବେ ସମସ୍ତେ ଅନ୍ଧହୋଇଗଲେ । ମର୍କ୍ୟୁରି କହିଲେ, "ତିନି ପରୀ କେଉଁଠି ଅଛନ୍ତି କହି-ଦେଲେ ତମ ଆଖି ଫେରାଇଦବୁ ।" ଶେଷରେ ସେମାନେ ବାଧ୍ୟହୋଇ ପରୀଙ୍କ ପାଖକୁ ଯିବାର ବାଟ ବତେଇଦେଲେ ।

ସେ ଦୁହେଁ ଯାଇ ତିନି ପରୀଙ୍କ ପାଖରେ ପହଞ୍ଚିଲେ । ଏମାନଙ୍କ ପାଖରେ ତିନୋଟି ବିଚିତ୍ର ଜିନିଷ ଥିଲା—ଗୋଟିଏ ଥଳି, ଯୋଡ଼ିଏ ବିଚିତ୍ର କଠୋଉ ଓ ଗୋଟିଏ ଟୋପି । ପରୀମାନେ ଭାରି ସୁନ୍ଦରୀ । ସେମାନଙ୍କର ବ୍ୟବହାର ମଧ୍ୟ ଭଲ । ମର୍କ୍ୟୁରି ସେମାନଙ୍କୁ ଆଗରୁ ଚିହ୍ନିଥିଲାପରି ଜଣାପଡ଼ୁଥିଲା । ମର୍କ୍ୟୁରିଙ୍କ ଅନୁରୋଧରେ ସେମାନେ ଏହି ତିନୋଟି ଜିନିଷ ପର୍ସିଅସଙ୍କୁ ଦେବାପାଇଁ ରାଜି ହେଲେ ।

ପ୍ରଥମେ ସେମାନେ ଥଳିଟି ଦେଲେ । ଏଇଟି ହରିଣ ଚମଡ଼ାରେ ତିଆରି ଓ ତା' ଉପରେ ସୁନ୍ଦର କାରୁକାର୍ଯ୍ୟ ହୋଇଥିଲା । ତା'ପରେ କଠୋଉ ଦୁଇଟି ଆଣିଲେ । ପ୍ରତି କଠୋଉରେ ଗୋଟିଏଲେଖାଏଁ ଡେଣା ଲଗିଥିଲା । ପର୍ସିଅସ ପଟେ କଠୋଉ ପାଖରେ ଥୋଇ ଆରପଟକ ଗୋଟିଏ ଗୋଡ଼ରେ ପିନ୍ଧୁ ପିନ୍ଧୁ ଥୁଆହୋଇଥିବା କଠୋଉଟି ଉଡ଼ିଯିବାକୁ ବସିଲା । ମର୍କ୍ୟୁରି ଡେଇଁପଡ଼ି ତାହା ଧରିପକାଇଲେ । ସାବଧାନ କରିଦେଲେ ଯେ ଦୁଇଟିଯାକ ଏକାବେଳକେ ପିନ୍ଧିବାକୁ ହେବ । ପର୍ସିଅସ ଦୁଇଟିଯାକ କଠୋଉ ପିନ୍ଧିସାରିବା

ପରେ ସେ ଆଉ ଭୂଇଁଉପରେ ବସିରହିବା କଷ୍ଟକର ହେଲା । ସେ ଉଡ଼ିବାକୁ ବାହାରିଲେ । ଶେଷରେ ପକ୍ଷୀମାନେ ତାଙ୍କ ମୁଣ୍ଡରେ ଟୋପିଟି ପିନ୍ଧାଇ ଦେଲେ । ଏହା ପିନ୍ଧିବାପରେ ଏକ ଅଦ୍ଭୁତ ଘଟଣା ଘଟିଲା । ସେ ଆଉ କାହାରିକୁ ଦେଖାଗଲେନାହିଁ ।

ମର୍କ୍ୟୁରି ପଚାରିଲେ, "ପର୍ସିଅସ, ତୁମେ କୁଆଡ଼େ ଅଛ ?"

ପର୍ସିଅସଙ୍କଠାରୁ ଉତ୍ତର ମିଳିଲା—"ଏଇ ଯେ ତୁମ ପାଖରେ ! ତୁମେ କଅଣ ମୋତେ ଦେଖିପାରୁନାହଁ ?"

ମର୍କ୍ୟୁରି କହିଲେ—"ଦେଖିପାରିବ କପରି ? ଏ ଟୋପିକୁ ଯେ ପିନ୍ଧେ ସେ ଆଉ ଦେଖାଯାଏନାହିଁ । ତୁମେ ମେଡୁସାକୁ ମାରିବାକୁ ଗଲାବେଳେ ସେ ତୁମକୁ ଦେଖିପାରିବ ନାହିଁ ବୋଲି ଏ ଟୋପି ତୁମକୁ ପିନ୍ଧାଇ ଦିଆଗଲା । ଏବେ ଏ କଠୋର ପିନ୍ଧି ତୁମେ କପରି ଯାଇପାରିବ ଦେଖିବା । ମୁଁ ଆଗେ ଆଗେ ଯାଉଛି—ତୁମେ ମୋ ପଛରେ ଆସ ।" ମର୍କ୍ୟୁରିଙ୍କ ଟୋପିର ଦୁଇପାଖେ ଦୁଇଟି ଡେଣା ଖୋଲିଗଲା । ଦୁହେଁଯାକ ଆକାଶକୁ ଉଠିଯାଇ ଉଡ଼ିବାକୁ ଲାଗିଲେ ।

ପର୍ସିଅସ୍ ଓ ମର୍କ୍ୟୁରି ଦୁହେଁ ଶୂନ୍ୟ ଆକାଶରେ ଅନେକ ବାଟ ଉଡ଼ିଯିବା ପରେ କାହାର ଡେଣାର ଶବ୍ଦ ଶୁଣାଗଲା । ପର୍ସିଅସ ଟିକିଏ ଭୟ କରିଗଲେ । ମର୍କ୍ୟୁରି କହିଲେ, "ଭୟର କାରଣ ନାହିଁ । ସେ ହେଉଛନ୍ତି ମୋର ଭଉଣୀ । ତାଙ୍କ ନାଆଁ ଏଥିନ । ସେ ଆମକୁ ସାହାଯ୍ୟ କରିବେ । ତାଙ୍କ ସାହାଯ୍ୟବିନା ତୁମେ ମେଡୁସାକୁ ମାରିପାରିବନାହିଁ । ଆମେ ଯାହା ଦେଖିପାରୁନାହେଁ, ସେ ତାହା ଦେଖିପାରନ୍ତି । ତୁମେ ଆଉ କାହାକୁ ଦେଖାଯାଉନାହିଁ ସତ, କିନ୍ତୁ ସେ ତୁମକୁ ଦେଖିପାରି ଆସିଛନ୍ତି । ମେଡୁସା ଆଉ ତା ଦୁଇ ଭଉଣୀ କେଉଁଠି ଅଛନ୍ତି ଆମକୁ ଜଣାନାହିଁ । କୁଆଡ଼େ ଖୋଜିବୁଲିବା ? ଏଥିନ ଆମକୁ ମେଡୁସା ପାଖରେ ପହଞ୍ଚାଇଦେବେ ।"

ସେତେବେଳକୁ ସେମାନେ ସମୁଦ୍ର ଉପରେ ଉଡ଼ୁଥିଲେ । ପର୍ସିଅସ୍ ତଳକୁ ଚାହିଁ କେବଳ ନୀଳପାଣି ଆଉ ତା ଉପରେ ଧଳା ଢେଉ ଦେଖୁଥିଲେ । ତାଙ୍କ କାନପାଖରେ ଧୀରସ୍ୱରରେ ଶୁଣାଗଲା, "ଏଇ ଦେଖ, ତିନଭଉଣୀଯାକ ଶୋଇଛନ୍ତି ।" ପର୍ସିଅସ୍ ସେମାନଙ୍କୁ ଦେଖି ଜପାରି ପଚାରିଲେ, "କାହିଁ,

କେଉଁଠି ? ମୁଁ ସେମାନଙ୍କୁ ଦେଖିପାରୁନ ।" ପର୍ସିଅସ୍ ପୁଣି ଶୁଣିଲେ, "ଆମ ତଳେ ଏଇ ଯେଉଁ ଦ୍ୱୀପଟା ଅଛି, ତାର କୂଳକୁ ଚାହାଁ ।"

ମର୍କ୍ୟୁର କହିଲେ, "ଦେଖିଲ, ମୋ କଥା ସତ କି ନାହିଁ ? ମୋ ଭଉଣୀ ପ୍ରଥମେ ସେମାନଙ୍କୁ ଦେଖିପାରିବେ ବୋଲି ମୁଁ କହିଥିଲି ପରା ।" ପର୍ସିଅସ ଖୁବ୍ ତଳକୁ ଚାହିଁ ଗୋଟିଏ ଶ୍ରେଷ୍ଠ ଦ୍ୱୀପ ଦେଖିପାରିଲେ । ତାର କୂଳଟା ପାହାଡ଼ିଆ । ସମୁଦ୍ରର ଲହରୀଗୁଡ଼ାକ କୂଳରେ ପିଟିହେଉଥାନ୍ତି । ଦ୍ୱୀପର ଗୋଟାଏ ପାଖର କୂଳ ପାହାଡ଼ିଆ ନୁହେଁ—ବାଲିରେ ପୂର୍ଣ୍ଣ । ତିନିଜଣଯାକ ସେଇ ବାଲିଆ ଜାଗାରେ ଓହ୍ଲାଇପଡ଼ିଲେ ।

ଏବେ ପର୍ସିଅସ ତିନିଭଉଣୀଙ୍କୁ ଦେଖିପାରିଲେ । ସେମାନଙ୍କର ସୁନା ଡେଣା ଉପରେ ଚନ୍ଦ୍ରକିରଣ ପଡ଼ି ଝକ୍‌ଝକ୍ ଦିଶୁଥାଏ । ସେମାନଙ୍କ ଲମ୍ବ ଲମ୍ବ ଗୋଜିଆ ଆଙ୍ଗୁଠିଗୁଡ଼ାକ ଦେଖିଲେ ଡରଲାଗିବା କଥା । ଏଣେ ମୁଣ୍ଡର ସାପଗୁଡ଼ାକ କିଭ ଲହ ଲହ କରି ଗୁଡ଼େଇଭୁଡ଼େଇ ହେଉଥାନ୍ତି । ଭାଗ୍ୟର କଥା, ସେତେବେଳକୁ ତିନିଭଉଣୀ ନିଶ୍ଚିନ୍ତରେ ଶୋଇଥାନ୍ତି । ଚେଇଁଥିଲେ ସେମାନଙ୍କୁ ଚାହିଁଲାକ୍ଷଣି ଏମାନେ ପଥର ପାଲଟି ଯାଇଥାନ୍ତେ ।

ମର୍କ୍ୟୁର ଚୁପ୍‌କରି ପର୍ସିଅସଙ୍କ କାନରେ କହିଲେ, "ଏଇ ହେଉଛି ଅସଲ ସୁବିଧାବେଳ । ଶୀଘ୍ର ଖଣ୍ଡାର ଏକ ଚୋଟରେ ମେଡୁସାର ମୁଣ୍ଡଟାକୁ ଗଣ୍ଡିରୁ ଅଲଗା କରିଦିଅ । ଦେଖ, ସେମାନେ ଆଖି ମେଲିବା ଆଗରୁ ତୁମ କାମ ଶେଷକରିବ । ଆଖି ଖୋଲିଲେ ତୁମର ଆଉ ରକ୍ଷା ନାହିଁ ।"

ପର୍ସିଅସ୍ ଖଣ୍ଡାଧରି ବାହାରିଲେ; କିନ୍ତୁ ତିନିଙ୍କ ଭିତରୁ ମେଡୁସା କିଏ ଜାଣି ନପାରି ଟିକିଏ ଛାନ୍ତାଢ଼ୋଇଗଲେ । ଏହି ସମୟରେ ଏଥିନ ତାଙ୍କ କାନପାଖରେ କହିଲେ, "ଦେଖ, ଜଣେ କଡ଼ ଲେଉଟାଉଛି, ଆଉ ଦୁଇଜଣ ଶୋଇରହିଛନ୍ତି । ଯିଏ କଡ଼ ଲେଉଟାଉଛି, ସେହି ହେଉଛି ମେଡୁସା । ସାବଧାନ, ତା ନିଦ ଭାଙ୍ଗିଆସୁଛି । ସେ କାଳେ ଆଖି ମେଲାକରିଦେବ, ସେଥିପାଇଁ ତୁମେ ଢାଲଉପରେ ତାର ଛାଇକୁ ଚାହିଁ ତାକୁ ହାଣିବ ।"

ଏତେବେଳକୁ ଅର୍ସିଅସ ବୁଝିପାରିଲେ ମର୍କ୍ୟୁର ତାଙ୍କୁ ଢାଲ ମାଜି ଝକ୍‌ଝକ୍ କରିବାକୁ କାହିଁକି କହିଥିଲେ । ସେ ଏଣିକି କେବଳ ଢାଲକୁ ଚାହିଁଲେ । ସେ ଆସ୍ତେ ଆସ୍ତେ ଅସୁରୁଣୀମାନଙ୍କ ପାଖକୁ ଆସିବାରୁ ସାପଗୁଡ଼ାକ

ଘୁ ସୁ ଶବ୍ଦକରି କାମୁଡ଼ିବାକୁ ବାହାରିଲେ । ସେହି ଶବ୍ଦରେ ମେଡୁସାର ନିଦ ଭାଙ୍ଗିଗଲା । ସେ ଆଖି ଖୋଲିବା ଆଗରୁ ପର୍ସିଅସ ଖଣ୍ଡାରେ ଏପରି ଏକ ଚୋଟ ମାରିଲେ ଯେ ତାର ମୁଣ୍ଡଟା ଗଣ୍ଡିରୁ ଅଲଗା ହୋଇ କିଛି ଦୂରରେ ଯାଇ ପଡ଼ିଲା ।



ମର୍କ୍ୟୁରି ପର୍ସିଅସ୍‌ଙ୍କୁ ପ୍ରଶଂସାକରି କହିଲେ, "ଆଉ ମୁହୂର୍ତ୍ତେ ଡେରି କରନାହିଁ । ଶୀଘ୍ର ମୁଣ୍ଡଟାକୁ ଥଳିଭିତରେ ପୂରାଇଦିଅ ।"

ପର୍ସିଅସ୍ ଢାଲରେ ମେଦୁସାର ମୁଣ୍ଡର ପ୍ରତିବିମ୍ବ ଆଡ଼କୁ ଅନାଇଁ ଥଳରେ ମୁଣ୍ଡଟିକୁ ପୂରାଇଦେଲେ । ଆଶ୍ଚର୍ଯ୍ୟର କଥା, ଥଳଟି ଏତେ ଛୋଟ ହେଲେହେଁ ସେଥିରେ ସେ ପ୍ରକାଣ୍ଡ ମୁଣ୍ଡଟା ପଶିଗଲା ।

ପର୍ସିଅସ୍ ଥଳଟି ଧରି ମୁହୂର୍ତ୍ତକ ଭିତରେ ଉପରକୁ ବହୁଦୂର ଉଡ଼ିଗଲେ । ରାକ୍ଷସୀ ଦୁହେଁ ଉଠିପଡ଼ି ଭଉଣୀର ମଲା ଗଣ୍ଡିଟା ପଡ଼ିଥିବାର ଦେଖି ଗର୍ଜନ କରିଉଠିଲେ । ଦୁହିଁଙ୍କ ମୁଣ୍ଡର ସାପମାନେ ସୁ ସୁ ଗର୍ଜନ କଲେ । ଦୁଇ ରାକ୍ଷସୀ ରାଗରେ ଗର୍ଜନ କରି ସୁନାର ଡେଣା ମେଲାଇ ଆକାଶରେ ଉଡ଼ିବାକୁ ଲାଗିଲେ । ସେମାନେ ରାଗରେ ଦାନ୍ତ କଡ଼ମଡ଼ କରୁଥାନ୍ତି । ପର୍ସିଅସ ଯେଉଁ ଟୋପି ପିନ୍ଧି-ଥିଲେ ତା'ଯୋଗେ ଅସୁରୁଣୀଦୁହେଁ ତାଙ୍କୁ ଦେଖିପାରିଲେନାହିଁ । ଏଣେ ପର୍ସିଅସ ସାବଧାନ ଥାନ୍ତି ଯେପରି ସେ ସେମାନଙ୍କର ମୁହଁ ନଦେଖନ୍ତି । ଦୈବାତ୍ ସେମାନଙ୍କ ଆଖି ତାଙ୍କ ଉପରେ ପଡ଼ିଗଲେ ସେ ପଥର ହୋଇ ତଳକୁ ଖସି ପଡ଼ିଥାନ୍ତେ । ଏଣେ ପାଦରେ ଡେଣାଲଗା କଠୋଉ ପିନ୍ଧିଥିବାରୁ ସେ ଖୁବ୍ ବେଗରେ ଉଡ଼ୁଥାନ୍ତି । ଅଳ୍ପସମୟ ଭିତରେ ସେ ବହୁତ ଦୂରକୁ ଚାଲିଗଲେ । କ୍ରମେ ରାକ୍ଷସୀମାନଙ୍କର ଗର୍ଜନ ଆଉ ଶୁଣାଗଲାନାହିଁ । ସେ ମେଦୁସାର ମୁଣ୍ଡ ଧରି ସେରିଫସ୍ ଦ୍ୱୀପରେ ପହଞ୍ଚିଲେ । ବାଟରେ ତାଙ୍କୁ ଆହୁରି ଅନେକ ବିପଦ ଘଟିଥିଲା । ସେଥିଭିତରୁ ଗୋଟିଏ ଘଟଣା ହେଉଛି, ବାଟରେ ପର୍ସିଅସ ଆଣ୍ଡ୍ରୋ-ମେଡ଼ା ବୋଲି ଗୋଟିଏ ପ୍ରକାଣ୍ଡ ଦୁଷ୍ଟ ଦୈତ୍ୟକୁ ଭେଟିଲେ । ସେ ତାକୁ ମେଦୁସାର ମୁଣ୍ଡଟା ଦେଖାଇଦେବାରୁ ସେ ଗଦାଏ ପଥର ହୋଇଗଲା ।

ସେରିଫସ୍ ଦ୍ୱୀପରେ ପହଞ୍ଚିବାମାତ୍ରେ ପର୍ସିଅସ ମାଆଙ୍କୁ ଦେଖିବାକୁ ଗଲେ । କେଉଟଘରକୁ ଯାଇ ବୁଝିଲେ ଯେ ମାଆ ସେଠାରେ ନାହାନ୍ତି । ପର୍ସିଅସ ଯିବାପରେ ଦୁଷ୍ଟ ରାଜା ତାଙ୍କ ଉପରେ ନାନା ଅତ୍ୟାଚାର କରିବାରୁ ସେ ପଳାଇଯାଇ ଗୋଟିଏ ମଠରେ ଆଶ୍ରୟ ନେଇଥିଲେ । ମଠର ସନ୍ନ୍ୟାସୀମାନେ ତାଙ୍କୁ ଆଦରରେ ରଖିଥିଲେ । ସେ ଦ୍ୱୀପର ଲୋକମାନେ ସମସ୍ତେ ରାଜାଭଳି ଅତ୍ୟାଚାରୀ, କିନ୍ତୁ ସେହି କେଉଟ ଓ ମଠର ସନ୍ନ୍ୟାସୀମାନେ ଭଲଲୋକ ଥିଲେ । ତେଣୁ ପର୍ସିଅସ୍‌ଙ୍କ ମାଆ ମଠରେ ସୁଖରେ ଥିଲେ ।

ପର୍ସିଅସ୍ ଦୁଷ୍ଟମାନଙ୍କୁ ଉପଯୁକ୍ତ ଦଣ୍ଡ ଦେବାକୁ ମନେ ମନେ ବିଚାର କଲେ । ସେ ମେଦୁସାର ମୁଣ୍ଡଟି ଥଳରେ ଧରି ରାଜବାଟୀରେ ପହଞ୍ଚିଲେ ।

ପର୍ସିଅସ୍‌ଙ୍କୁ ଦେଖିଲାମାତ୍ରେ ପଲିଡେକ୍‌ଟସ ମନେ ମନେ ରାଗିଗଲେ । ସେ ଭାବଥିଲେ, ପର୍ସିଅସ୍ ମେଡୁସାକୁ ଚାହିଁ ପଥର ହୋଇଯାଇଥିବ କିମ୍ବା ତାର ହାତରେ ମରିଥିବ । ଏବେ ସେ ଫେରିଆସିଥିବାର ଦେଖି ରାଗିଉଠି କହିଲେ, "ମେଡୁସାର ମୁଣ୍ଡ ଆଣି ନଥିଲେ ତୋତେ ପ୍ରାଣଦଣ୍ଡ ଦିଆଯିବ ।"

ପର୍ସିଅସ୍ ଉତ୍ତର କଲେ, "ମହାରାଜ, ମୁଁ ମେଡୁସାର ମୁଣ୍ଡ ଆଣି ଆସିଛି । ତା' ମୁଣ୍ଡର ସାପଗୁଡ଼ାକ ଏବେ ମଧ୍ୟ ବଞ୍ଚିଛନ୍ତି ।"

ଏଥିପୂର୍ବରୁ ରାଜା ପଲିଡେକ୍‌ଟସ ଏହି ରାକ୍ଷସୀମାନଙ୍କ ବିଷୟରେ ବହୁତ ବିଚିତ୍ର କଥା ଶୁଣିଥିଲେ । ସେହି ରାକ୍ଷସୀର କଟାମୁଣ୍ଡ ଆସିଛି ଶୁଣି ତାକୁ ଦେଖିବାପାଇଁ ତାଙ୍କ ମନ ଅଥୟ ହୋଇଉଠିଲା । ସେ ମୁଣ୍ଡଟିକୁ ଦେଖାଇ ଦେବାପାଇଁ ପର୍ସିଅସ୍‌ଙ୍କୁ ଆଦେଶଦେଲେ ।

ପର୍ସିଅସ୍ କହିଲେ, "ଆପଣ ଶୁଣିଛନ୍ତି ଯିଏ ମେଡୁସାର ମୁହଁକୁ ଚାହିଁବ ସେ ତାକୁ ଚାହିଁରହିଥିବ, ପଲକ ପକାଇ ପାରିବ ନାହିଁ । ପ୍ରକୃତରେ ସେ କଥା ସତ । ଏପରି ଗୋଟିଏ ବିଚିତ୍ର ଜନ୍ତୁ ରାଜ୍ୟର ସବୁ ଲୋକ ଦେଖିବା ଦରକାର । ମୋର ନିବେଦନ ଗୋଟିଏ ଦିନ ସ୍ଥିର କରାଯାଉ । ସେଦିନ ରାଜ୍ୟର ସମସ୍ତେ ଏଠାକୁ ଆସି ମେଡୁସାର ମୁଣ୍ଡକୁ ଦେଖିବେ ।"

ଏ ପ୍ରସ୍ତାବଟି ରାଜାଙ୍କ ମନକୁ ପାଇଲା । ତା' ଆରଦିନ ରାଜ୍ୟର ସମସ୍ତେ ରାଜବାଟୀକୁ ଆସି ମେଡୁସାର ମୁଣ୍ଡ ଦେଖିବେ ବୋଲି ଘୋଷଣାକରାଗଲା । ରାଜ୍ୟର ହଜାର ହଜାର ଲୋକ ଆସି ରାଜବାଟୀରେ ଜମାହେଲେ । ଯେଉଁ ଅଳ୍ପ କେତେଜଣ ନିଜ ନିଜ କାମରେ ଲାଗିଥିଲେ, ସେଇମାନେ କେବଳ ଆସିଲେ ନାହିଁ । ଯେଉଁ କେଉଟଟି ପର୍ସିଅସ୍‌ଙ୍କୁ ଆଶ୍ରୟ ଦେଇଥିଲା, ସେ ମାଛ ଧରିବା ପାଇଁ ଚାଲିଯାଇଥିଲା । ମଠର ସନ୍ନ୍ୟାସୀମାନେ ପ୍ରାର୍ଥନା ଓ ଧର୍ମଗ୍ରନ୍ଥ ପଢ଼ିବାରେ ବ୍ୟସ୍ତ ରହିଲେ । ସେମାନେ ମେଡୁସାର ମୁଣ୍ଡ ଦେଖିବାକୁ ଆସନ୍ତେ ବା କାହିଁକି ?

ରାଜା ଗୋଟିଏ ଉଚ୍ଚ ବେଦୀରେ ସିଂହାସନ ଉପରେ ବସିଲେ । ରାଜ୍ୟର ହଜାର ହଜାର ଲୋକ ମେଡୁସାର ମୁଣ୍ଡ ଦେଖିବେ ବୋଲି ଠେଲାପେଲା ହେଉଥାନ୍ତି । ପର୍ସିଅସ୍ ଥଳିଟି ଧରି ଠିଆହୋଇଥାନ୍ତି । ଲୋକେ ଅଥୟ ହୋଇ ପାଟିକଲେ, "ଆମକୁ ଶୀଘ୍ର ମେଡୁସାର ମୁଣ୍ଡ ଦେଖାଅ ।"

ପର୍ସିଅସ୍ ଧୀରସ୍ଥିର ସ୍ୱରରେ କହିଲେ, "ମହାରାଜ, ଆପଣ ଓ ଆପଣଙ୍କ ପ୍ରଜାମାନେ ମେଡୁସାର ମୁଣ୍ଡ ଦେଖିବାକୁ ଉତ୍ସୁକ । କିନ୍ତୁ ଏଭଳି ଗୋଟାଏ କଦର୍ଯ୍ୟ ଜିନିଷ ଦେଖି କାହାର ଲାଭ ନାହିଁ, ବରଂ କ୍ଷତି ଅଛି । ତେଣୁ ମୁଁ ସେ ମୁଣ୍ଡଟା ଦେଖାଇବାକୁ ଇଚ୍ଛାକରୁନାହିଁ ।"

ପର୍ସିଅସ୍ଙ୍କର ଉଦ୍ଦେଶ୍ୟ ଭଲ ଥିଲା । ଏତେଗୁଡ଼ାଏ ଲୋକ ପଥର ପାଲଟିଗଲେ ଲାଭ କଅଣ ? ମାତ୍ର ଦୁଷ୍ଟ ଲୋକେ ସେ କଥା ବୁଝିଲେ ନାହିଁ । ପାଟିତୁଣ୍ଡ କଲେ । ରାଜା ରାଗିଉଠି କହିଲେ, "ମୋ ସାଥିରେ ପୁଣି ଖେଳ ? ମେଡୁସାର ମୁଣ୍ଡ ନ ଆଣି ମିଛରେ ଏତେଗୁଡ଼ାଏ ଲୋକଙ୍କୁ ଠକିବାକୁ ବସିଛି । ତାକୁ ପ୍ରାଣଦଣ୍ଡ ନଦେଇ ଛାଡ଼ିବ ନାହିଁ ।" ମନ୍ତ୍ରୀମାନଙ୍କ ପରାମର୍ଶରେ ରାଜା ହୁକୁମ ଦେଲେ— ପର୍ସିଅସ୍ ମେଡୁସାର ମୁଣ୍ଡ ଦେଖାଉ, ନହେଲେ ତାର ମୁଣ୍ଡକାଟ ହେବ ।

ପର୍ସିଅସ୍ ଦେଖିଲେ ଏଭଳି ଦୁଷ୍ଟଲୋକଙ୍କର ଉପକାର କରିବାକୁ ଚେଷ୍ଟା କରିବା ଠିକ୍ ନୁହେଁ । ସେ ନିଜ ମୁହଁ ବୁଲାଇଦେଇ ଥଳିରୁ ମେଡୁସାର ମୁଣ୍ଡଟି କାଢ଼ି ଟେକିଧରିଲେ । ସମସ୍ତେ ସେ ମୁଣ୍ଡ ଦେଖି ସଙ୍ଗେ ସଙ୍ଗେ ପଥର ପାଲଟି-ଗଲେ । ରାଜା, ମନ୍ତ୍ରୀ, ରାଜ୍ୟର ଲୋକମାନେ, ଯେ ଯେପରି ଥିଲେ ସେହିପରି ରହିଗଲେ । କ୍ଷଣକ ଭିତରେ ହଜାର ହଜାର ପଥରମୂର୍ତ୍ତି ଛଡ଼ା ଆଉ କିଛି ଦେଖାଗଲାନାହିଁ । ପର୍ସିଅସ୍ ସେହି ମୁଣ୍ଡକୁ ପୁଣି ଥଳିରେ ବନ୍ଦକରିଦେଲେ । ତା'ପରେ ମଠକୁ ଯାଇ ମାଆଙ୍କୁ ସବୁ ଘଟଣା କହିଲେ । ଏଣିକି ମାଆ ପୁଅ ସୁଖରେ ରହିଲେ ।

---

# ରାଜା ମିଦାସ୍

ବହୁକାଳ ପୂର୍ବେ ଗ୍ରୀସ୍ ଦେଶର ଗୋଟିଏ ରାଜ୍ୟରେ ମିଦାସ ବୋଲି ଜଣେ ରାଜା ଥିଲେ । ତାଙ୍କର ବହୁତ ଧନସମ୍ପତ୍ତି ଥିଲା । ରାଜଭଣ୍ଡାରରେ ସେ ବହୁତ ସୁନା ଜମାକରି ରଖିଥିଲେ । ସୁନାରେ ତାଙ୍କର ସବୁଠାରୁ ବେଶି ଲୋଭ । ଜଗତରେ ସେ ଦୁଇଟି ଜିନିଷକୁ ବେଶି ଭଲପାଉଥିଲେ—ଗୋଟିଏ ହେଉଛି ସୁନା, ଆଉଟି ହେଉଛି ତାଙ୍କର ଏକମାତ୍ର ଝିଅ ମେରିଗୋଲ୍ଡ଼ । ସୁନାର ମୁକୁଟଟି ମୁଣ୍ଡରେ ଦେଲାବେଳେ ତାଙ୍କ ମନ ଆନନ୍ଦରେ ଭରିଯାଏ । ଭାବନ୍ତି ତାଙ୍କପରି ଭାଗ୍ୟବାନ୍ ଆଉ କିଏ ? ଏତେ ସୁନା କାହା ପାଖରେ ଅଛି ?

ମେରିଗୋଲ୍ଡ଼ ବାର-ତେର ବର୍ଷର ଝିଅ—ଗୋଟିଏ ଗୁଲାବରେ ଗଢ଼ା । ମୁଣ୍ଡର ବାଳଗୁଡ଼ିକ ରେଶମପରି କଅଁଳ, ଚିକ୍କଣ । ତାକୁ ଯିଏ ଦେଖେ ଘଡ଼ିଏ ଚାହିଁ ରହିଯାଏ । ଏପରି ସୁନ୍ଦରୀ ଝିଅକୁ କେଉଁ ବାପ ଭଲନପାଇବ ! ମିଦାସଙ୍କର ଗୋଟିଏ କାମ ହେଲା, ଆହୁରି ସୁନା ସଞ୍ଚିବା, ଅନ୍ୟ କାମଟି ହେଲା ମେରିଗୋଲ୍ଡ଼କୁ ଆଦର କରିବା । ତାର ମଧୁର କଥା ଶୁଣିଲେ ରାଜା ମିଦାସ ଦୁନିଆର ସବୁକଥା ଭୁଲିଯାନ୍ତି ।

ସକାଳେ ପୂର୍ବଦିଗରେ ନାଲି ଟହ ଟହ ସୂର୍ଯ୍ୟ ଉଦୟ ହେଉଥିବାବେଳେ ତାଙ୍କର ଧୂନେଲି କିରଣ ପୃଥିବୀ ଉପରେ ପଡ଼େ । ମିଦାସ ଭାବନ୍ତି, ସୂର୍ଯ୍ୟକିରଣରେ ସବୁ ଜିନିଷ ସୁନେଲି ରଙ୍ଗ ଧରୁଛନ୍ତି, ସତକୁସତ ସେସବୁ ସୁନା ହୋଇଯାଆନ୍ତେ କି ? ଯେତେବେଳେ ମେରିଗୋଲ୍ଡ଼ ବଗିଚାରୁ କୌଣସି ହଳଦିଆ ଫୁଲ ତୋଳି-ଆଣି ବାପାଙ୍କୁ ଦିଏ, ସେତେବେଳେ ମିଦାସ କହନ୍ତି, "ଏଗୁଡ଼ାକ ତୋଳିବାରେ କି ଲାଭ ? ସୁନାର ଫୁଲ ହୋଇଥିଲେ କେଡ଼େ ଭଲ ହୋଇଥାନ୍ତା ।" ଅତି ସୁନ୍ଦର ସୁଗନ୍ଧ ଗୋଲାପଫୁଲ ମଧ୍ୟ ରାଜାଙ୍କୁ ଭଲ ଲାଗେ ନାହିଁ । ସେ କହନ୍ତି, "ଏସବୁ ସୁନାର ହୋଇଥିଲେ ସିନା ଉପକାରରେ ଲାଗନ୍ତା ।"

ସୁନାରେ ରାଜାଙ୍କର ଲୋଭ ଏପରି ବଢ଼ିଗଲା ଯେ, ସେ ଦିନରାତି ଖାଲି 'ସୁନା' କଥା ଚିନ୍ତା କଲେ । ରାଜା ପ୍ରତିଦିନ ଅନେକ ବେଳଯାଏ ତାଙ୍କର

ସୁନାଭଣ୍ଡାରରେ କଟାନ୍ତି । ସୁନାଖଣ୍ଡଗୁଡ଼ିକ ଏପାଖ ସେପାଖ କରି ଦେଖନ୍ତି, ମୋହରଗୁଡ଼ାକ ଥରକୁଥର ଗଣନ୍ତି । ମୋହରର ଶବ୍ଦ ତାଙ୍କ କାନକୁ ଭାରି ଭଲଲାଗେ । ରାଜବାଟୀରେ ବେଳେ ବେଳେ ନାଚ ଗୀତ ହୁଏ; କିନ୍ତୁ ରାଜା ସେସବୁ ଶୁଣିବାକୁ ଭଲପାଆନ୍ତିନାହିଁ । ସୁନା ମୋହରର ଶବ୍ଦ ଶୁଣିଲେ ତାଙ୍କ ମନ ଖୁସିହୋଇଯାଏ । ସୁନା ଛଡ଼ା ଅନ୍ୟ କିଛି ଜିନିଷ ଛୁଇଁବାକୁ ତାଙ୍କ ମନ ହୁଏନାହିଁ ।



ଦିନେ ରାଜା ଭଣ୍ଡାରଘରେ ବସି ମୋହର ସବୁ ଗଣି ରଖୁଛନ୍ତି । ବେଳେ ବେଳେ ମୋହରର ଶବ୍ଦ ଶୁଣି ସେ ଆନନ୍ଦରେ ଅଧୀର ହୋଇ ପଡ଼ୁଛନ୍ତି । ଏହି ସମୟରେ ସେ ଦେଖିଲେ—କାନ୍ଥକୁ ଲାଗି କିଏ ଜଣେ ଛିଡ଼ାହୋଇଛି । ତାଙ୍କର ହସ ହସ ମୁହଁରୁ ଗୋଟାଏ ଆଲୋକ ବାହାରୁଛି । ଏବେ ରାଜା ବୁଝିପାରିଲେ, ଏଇଟି କୌଣସି ସାଧାରଣ ମନୁଷ୍ୟ ନୁହେଁ—ସ୍ୱର୍ଗର କୌଣସି

ଦେବତା । ଏହି ଦେବତା ରଜାଙ୍କୁ ଚାହିଁ କହିଲେ, "ମିଦାସ, ଦେଖୁଛି ତୁ ଖୁବ୍ ଧନୀଲୋକ । ଏତେ ସୁନା ରଖିଛୁ, ବେଶ୍ ସୁଖରେ ତ ଥିବୁ ?"

ରଜା ଅତି ନମ୍ରଭାବରେ ପ୍ରଣାମ କରି କହିଲେ, "ପ୍ରଭୁ, ଏତିକ ମାତ୍ର ମୋର ସମ୍ପତ୍ତି । ଏତେବର୍ଷ ହେଲା ଲାଗି ଲାଗି ଏତକ ସୁନା ସଂଗ୍ରହ କରିଛି । ସେତେ ବେଶି କଅଣ ? ହଜାର ବର୍ଷ ବଞ୍ଚିଲେ ଅବା ମନମୁତାବକ ସୁନା ଜମା କରିପାରନ୍ତି, କିନ୍ତୁ ମଣିଷ କ'ଣ ଏତେ କାଳ ବଞ୍ଚିବ ?"

ଦେବତା କହିଲେ, "ତେବେ ଏତିକ ସୁନାରେ ତୋ ମନରେ ସନ୍ତୋଷ ଆସି ନାହିଁ ? ତୋର ଆହୁରି ସୁନା ଦରକାର ?"

ମିଦାସ ଦେଖିଲେ, ସ୍ୱର୍ଗର କେଉଁ ଦେବତା ତାଙ୍କ ଭଣ୍ଡାରଘରେ ଉଭା ହୋଇଛନ୍ତି । ସେ ଇଚ୍ଛା କଲେ ତାଙ୍କ ମନର କାମନା ନିଶ୍ଚୟ ପୂର୍ଣ୍ଣ ହୋଇ ପାରିବ । ଏପରି ସୁଯୋଗ ଛାଡ଼ିବାର ନୁହେଁ । ସେ ଦେବତାଙ୍କ ପାଦତଳେ ପଡ଼ି କହିଲେ, "ପ୍ରଭୁ, ଆପଣ ମୋ ମନକଥା ଜାଣିପାରିଛନ୍ତି । ଏଇ ସାମାନ୍ୟ ସୁନାରେ ମୋର ମନରେ ତୃପ୍ତି ଆସୁନାହିଁ । ଆପଣ ଇଚ୍ଛାକଲେ ମୋର ମନର ଦୁଃଖ ଦୂରହୋଇଯିବ । ମୁଁ ମନଇଚ୍ଛା ସୁନା ପାଇପାରିବି ।"

ଦେବତା କହିଲେ, "ବେଶ୍, ମୁଁ ତୋର ଦୁଃଖ ଦୂରକରିବି । କହ, ତୋର କଅଣ ଦରକାର ?"

ରଜା ମିଦାସ ଆନନ୍ଦରେ ନାଚିଉଠିଲେ । ସେ ପ୍ରାର୍ଥନା କଲେ, "ପ୍ରଭୁ, ମୋତେ ଏଇ ବର ଦିଅନ୍ତୁ ଯେ ମୁଁ ଯାହା ଛୁଇଁବି ତାହା ସୁନା ପାଲଟିଯିବ ।"

ଦେବତା ଟିକିଏ ହସି କହିଲେ, "ଓଃ ଏଇ କଥା ! ହଁ, ମୁଁ ତୋତେ ସେ ବର ଦେଇପାରେ, କିନ୍ତୁ ତାହା ନେବା ପୂର୍ବରୁ ଆହୁରି ଭାବିଚିନ୍ତି ଦେଖ— ଏଇ ବର ପାଇଲେ ତୁ ସୁଖୀ ହେଇପାରିବୁ ତ ?"

ରଜା ମିଦାସ କହିଲେ, "ପ୍ରଭୁ, ମୁଁ ଭାବିଚିନ୍ତି ଏ ବର ମାଗିଛି । ଏହି ବର ମିଳିଲେ ମୋର ସୁଖର ମାତ୍ରା ପୂର୍ଣ୍ଣ ହେବ । ଆଉ କିଛି ଚିନ୍ତା ରହିବ ନାହିଁ ।"

ଦେବତା 'ତଥାସ୍ତୁ' କହି ବୁଝାଇଦେଲେ—"କାଲି ସକାଳୁ ମୋ ବରର ଫଳ ମିଳିବ ।" ସଙ୍ଗେ ସଙ୍ଗେ ଘରଭିତରର ଆଲୁଅରେ ମିଦାସଙ୍କର ଆଖି ବୁଜି ହୋଇଗଲା । ସେ ଆଖି ଖୋଲିଲା ବେଳକୁ ଦେଖନ୍ତି ଘରେ ସେ ଦେବତା ନାହାନ୍ତି ।

ସେ ଧନଟିପାଇ ରାଜାଙ୍କ ମନ ବଡ଼ ଅସ୍ଥିର । ଖାଇବା ପିଇବା କାହିଁରେ ମନଲାଗୁନାହିଁ । ମେରିଗୋଲ୍ଡ଼ ବାପାଙ୍କ ପାଖକୁ ଆସି ଆଦରରେ କେତେ କଥା ପଚାରିଲା—ମାତ୍ର ମିଡାସ ତାର କଥା ଶୁଣି ମଧ ଶୁଣିପାରୁନାହାନ୍ତି । ତାଙ୍କ ମନରେ ଏକମାତ୍ର ଚିନ୍ତା—ସତେ କଅଣ ଦେବତାଙ୍କ କଥା ଫଳିବ ? ସତେ ସେ ଯାହା ଛୁଇଁଦେବେ ତାହା ସୁନାହୋଇଯିବ ?

ରାତିରେ ଖାଇ ପିଇ ରାଜା ଶୋଇବାକୁ ଗଲେ, ମାତ୍ର ତାଙ୍କ ଆଖିକି ନିଦ ଆସିଲା ନାହିଁ । ରାତିଟା ତାଙ୍କୁ ବହୁତ ଲମ୍ବା ଜଣାଗଲା । ପାହାନ୍ତିଆ ହୋଇ ଆସିଲା । ପକ୍ଷୀମାନେ ରାବ ଉଠିଲେ । ସୁଲୁସୁଲିଆ ପବନ ବହିଲା । ରାଜା ବିଛଣାରୁ ଉଠିପଡ଼ିଲେ । ସେ ନିଜ ଖଟକୁ ଚାହିଁଲେ । ସକାଳ ହୋଇଗଲାଣି । ତେବେ ଖଟଟା ସୁନା ହୋଇଗଲା ନାହିଁ କାହିଁକି ? ତାଙ୍କ ମନ ମରିଗଲା । ଦେବତା କ'ଣ ତାଙ୍କୁ ଠକିଦେଲେ ?

ଏହି ସମୟରେ ଝରକାବାଟେ ସୂର୍ଯ୍ୟକିରଣର ଗୋଟିଏ ରେଖା ତାଙ୍କ ଖଟଉପରେ ପଡ଼ିଲା । ସେ ଖଟଉପରୁ ଉଠି ଝରକା ଖୋଲିଦେଲେ । ଝଲକାଏ ସୂର୍ଯ୍ୟକିରଣ ଘରଭିତରେ ପଶିଗଲା । ଖଟଟା ତାଙ୍କୁ ହଳଦିଆ ଦିଶିଲା । ସେ ଦୌଡ଼ିଆସି ବିଛଣା ଚାଦରଟାକୁ ଟେକିବାକୁ ଚେଷ୍ଟାକଲେ । ଦେଖନ୍ତି ତ ଚାଦରଟା ସୁନା ହୋଇଯାଇଛି । ତାଙ୍କ ଆନନ୍ଦ ଆଉ କହିଲେ ନସରେ । ଦେବତା ତେବେ ମିଛକହିନାହାନ୍ତି, ସେ ଯାହା ଛୁଇଁବେ ସୁନାହୋଇଯିବ । ସେ ଘରଭିତରେ ଯାହା କିଛି ଦେଖିଲେ ସବୁ ଛୁଇଁଗଲେ । ସଙ୍ଗେ ସଙ୍ଗେ ସେସବୁ ସୁନା ହୋଇଗଲା । ସେ ଟିକିଏ ରହିଯାଇ ଚାରିପାଖକୁ ଚାହିଁଲେ । ସୁନାର ଘର, ସୁନା କାନ୍ଥ, ସୁନା କବାଟ, ସୁନା ଝରକା, ସୁନା ଖଟ, ସୁନା ଟେବୁଲ, ସୁନାର ସବୁ ଆସବାବ । ତାଙ୍କପରି ଧନୀ ଜଗତରେ ଆଉ କେହି ନ ଥିବେ । ତାଙ୍କ ପୋଷାକ ମଧ ସୁନାର ।

ସେ ଚଷମାଟା ଟେକିନେଇ ଆଖିରେ ଲଗାଇ ଦେଖନ୍ତି ତ, ଚଷମାର କାଚ ମଧ ସୁନାପାଲଟିଯାଇଛି, ଆଖିକୁ କିଛି ଦେଖାଯାଉ ନାହିଁ । ସେ ଚଷମାଟି କାଢ଼ି ଟେବୁଲ ଉପରେ ରଖିଦେଲେ । ଭାବିଲେ, ଚଷମା ନହେଲେ ମୋର ଚଳିଯିବ । ମେରିଗୋଲ୍ଡ଼ ପାଠ ପଢ଼ିଲାଣି । ସେ ବହି ପଢ଼ି ମୋତେ ଶୁଣାଇବ ।

ମିଡାସଙ୍କ ମନ ଅଥୟ । ଖାଲି ଘରଟା ସୁନା ହୋଇଛି । ସେ ସମଗ୍ର ରାଜବାଟୀକୁ ସୁନା ନକରି ଛାଡ଼ିବେ ନାହିଁ । ସେ ଘରକୁ ଘର ବୁଲି ସବୁ

ଛୁଇଁଗଲେ । ସେ ଯାହାକଛୁ ଛୁଇଁଦଅନ୍ତି, ତାହା ସୁନା ପାଲଟିଯାଏ । ଯେତେବେଳେ ଗର୍ବରେ ତାଙ୍କ ଛାତି ଫୁଲିଉଠେ ।

ରଜା ବଗିଚାରେ ପଶିଗଲେ । କେତୋଟି ଗଛକୁ ଛୁଇଁଦେଲାକ୍ଷଣି ତାହା ସୁନା ପାଲଟିଗଲା । ସୁନାର ଗଛରେ ସୁନାର ପତ୍ର, ସୁନାର କଢ଼ ଓ ଫୁଲ ଦେଖି ରଜାଙ୍କ ମନ ଆନନ୍ଦରେ ଭରିଗଲା । ବଗିଚାରେ କେତେଗୁଡ଼ାଏ ଗୋଲାପ ଗଛ ଥିଲା । ଆଗେ ରଜା ସେଗୁଡ଼ିକୁ ଖୁବ୍ ଭଲପାଉଥିଲେ । ଟେବୁଲ ଉପରେ ଫୁଲଦାନୀରେ ଦୁଇ ଚାରିଟା ଗୋଲାପ ଫୁଲ ନଥିଲେ ସେ ଚାକରଙ୍କ ଉପରେ ବିରକ୍ତ ହେଉଥିଲେ । ଏବେ ଗୋଲାପଫୁଲକୁ ତାଙ୍କର ଆଦର ନଥିଲା । ରଜା ଗୋଲାପ ବଗିଚାକୁ ଯାଇ ବୁଲି ବୁଲି ସବୁ ଗଛ, ଡାଳ, ପତ୍ର ଓ ଫୁଲକୁ ଛୁଇଁ ସୁନାକରିଦେଲେ ।

ଚାରିଆଡ଼େ ବୁଲି ବୁଲି ରଜାଙ୍କୁ ଭୋକହେଲା । ସେ ଖାଇବା ପାଇଁ ଟେବୁଲ ପାଖେ ବସିଗଲେ । ଚାକର ଗୋଟିଏ ଗିଲାସରେ ପାଣି ଓ କେତେଗୁଡ଼ାଏ ପ୍ଲେଟରେ ନାନା ରକମର ଖାଦ୍ୟ ଜିନିଷ ରଖିଦେଇଗଲା । ଏହି ସମୟରେ ମେରିଗୋଲ୍ଡ଼ ହାତରେ ଗୋଟିଏ ସୁନାର ଗୋଲାପଫୁଲ ଧରି ଆସି କାନ୍ଦି କାନ୍ଦି କହିଲା, "ବାପା, ମୁଁ ବଗିଚାକୁ ଗୋଲାପ ଫୁଲ ଆଣିବାପାଇଁ ଯାଇଥିଲି— ଦେଖିଲି ଗଛଗୁଡ଼ାକ ସବୁ ହଳଦିଆ ହୋଇଯାଇଛି । ଏତେ ଚାଣ ହୋଇଚି ଯେ ମୁଁ ବଡ଼ କଷ୍ଟରେ ଏଇ ଗୋଟିକ ଫୁଲ ଛିଣ୍ଡାଇ ଆଣିଛି । ପୁଣି ଏ ଫୁଲର ବାସ୍ନା କୁଆଡ଼େ ଗଲା ? ସେ ମାଳୀ ବଗିଚାକୁ ଖରାପ କରିଦେଇଛି ।"

ରଜା ଅସଲ କଥାଟି ଜାଣିପାରି କହିଲେ, "ମାଆ, ତୁ ପିଲାଲୋକ, ବୁଝିପାରୁନାହୁଁ । ଆଗେ ଯେଉଁ ଫୁଲ ଥିଲା ତାର ଦାମ୍ କେଇଟା ପଇସା ହେଉଥାନ୍ତା । ଏବେ ସେ ଫୁଲ ସୁନା ହୋଇଯାଇଛି । ତାର ଦାମ୍ ଶହ ଶହ ଟଙ୍କା ହେବ ।"

ମାତ୍ର ଏଥିରେ ମେରିଗୋଲ୍ଡ଼ର ଦୁଃଖ କମିଲା ନାହିଁ, ବରଂ ବଢ଼ିଲା । ତାର କାନ୍ଦ ଦେଖି ମିଦାସଙ୍କ ମନ ଟିକିଏ ଖରାପ ହେଲା । ସେ ଝିଅକୁ କହିଲେ, "ଆଚ୍ଛା, ତୋ ପାଇଁ ଭଲ ଭଲ ଫୁଲ ଆଣିଦେବା । ଏବେ ତୁ ମୋ ସାଥିରେ କିଛି ଖାଆ ।"

ମେରିଗୋଲ୍ଡ଼ ଗୋଟିଏ ଚୌକିରେ ଟେବୁଲ ପାଖେ ବସିପଡ଼ିଲା । ରଜା କଫି ପିଇବାପାଇଁ କପ୍‌ଟି ଟେକିବା ମାତ୍ରେ ତାହା ସୁନାର କପ୍ ହୋଇଗଲା ।

ସେ ଗୋଟିଏ ପ୍ଲେଟରେ କଫି ଢାଳିବାକୁ ବସିଲେ, ମାତ୍ର କପ୍‌ରୁ କଫି ନ ବାହାରି ତରଳ ସୁନା ବାହାରିଲା । ସେ ତାକୁ ପିଇ ନ ପାରି ସେଇ ଟେବୁଲ ଉପରେ ଦୁଃଖମନରେ ରଖିଦେଲେ ।



ସେତେବେଳକୁ ମିଦାସଙ୍କୁ ବଡ଼ ଶୋଷ । ସେ କଫି ପିଇ ନପାରି ଦୁଃଖରେ କହିଲେ, "ଓଃ, ପିଇବି କପରି ?" ବାପାଙ୍କର ଏହି କଥା ଶୁଣି ମେରିଗୋଲ୍ଡ଼ ଚମକିପଡ଼ିଲା । ସେ ପଚାରିଲା, "ବାପା, କଫି ପିଇଲ ନାହିଁ କାହିଁକି ?" ଝିଅଟି

ମନ ଭୁଲାଇବା ପାଇଁ ମିଦାସ କହିଲେ, "ନାଁ, ସେ କଣ୍ଟ ନୁହେଁ । ତୁ ତୋର ଦୁଧ ପିଇଦେ ।"

ଟେବୁଲ ଉପରୁ ସେ ଯାହା କଣ୍ଟ ପାଟି ପାଖକୁ ନେଇ ଖାଇବାକୁ ବସିଲେ ସେ ସବୁ ସୁନାହୋଇଗଲା । ସୁନାର ରୁଟି, ସୁନାର ଲହୁଣୀ, ସୁନାର ମାଂସ—ଏସବୁ କଅଣ ମଣିଷ ଖାଇପାରେ ! ମିଦାସ ଏବେ ଆକୁଳହୋଇ ମେରିଗୋଲଡ଼ ଆଡ଼କୁ ଅନେଇଲେ । ମେରିଗୋଲଡ଼ ଦେଖିଲା ବାପାଙ୍କ ମନ ଭଲ ନାହିଁ—ଆଖି ଲୁହରେ ଛଳ ଛଳ । "ବାପା, ତମ ମନ କାହିଁକି ଭଲ ନାହିଁ ?"—ଏହା କହି ମେରିଗୋଲଡ଼ ଉଠିପଡ଼ି ବାପାଙ୍କ ପାଖକୁ ଚାଲିଗଲା । ଝିଅ ପାଖକୁ ଆସିଲାକ୍ଷଣି ସେ ତାକୁ କୁଣ୍ଡାଇ ଗେଲ କରିବାକୁ ଗଲେ । ମାତ୍ର କି ଭୀଷଣ ପରିବର୍ତ୍ତନ ! ମେରିଗୋଲଡ଼ ସଙ୍ଗେ ସଙ୍ଗେ ସୁନା ପାଲଟିଗଲା । ଏହା ଦେଖି ମିଦାସଙ୍କର ଆଖି ଖୋସି ହୋଇଗଲା । ଆଗରେ ତାଙ୍କର ଝିଅ ନାହିଁ, ତାର ହସ ହସ ମୁହଁ ନାହିଁ, ତୁଣ୍ଡରୁ ମଧୁର ଦରୋଟି କଥା ବାହାରୁନାହିଁ—ଅଛି ଗୋଟିଏ ସୁନାର ପିତୁଳା ।

ମିଦାସଙ୍କର ମୁହଁ କଳା ପଡ଼ିଗଲା । ସେ ଆକୁଳ ହୋଇ ସେଇ ସୁନା ପିତୁଳାକୁ କୁଣ୍ଢାଇ କାନ୍ଦିବାକୁ ଲାଗିଲେ । ପିତୁଳାର ମୁଣ୍ଡର ଝାଆଁସା ସୁନା ବାଳଗୁଡ଼ିକ ମଧ୍ୟ ତାଙ୍କୁ ଖରାପଲାଗିଲା । ଓଃ ! ସେ କଣ କଲେ ?

ମିଦାସଙ୍କର ଅବସ୍ଥା କହିଲେ ନ ସରେ । ଦୁନିଆରେ ତାଙ୍କଠାରୁ ବଳି ହୀନତର ଲୋକ ଆଉ କେହି ଥିବ ବୋଲି ସେ ଭାବିପାରିଲେ ନାହିଁ । ସେ ମନେ ମନେ ବିଚାରିଲେ, "ମୋର ଏସବୁ ସୁନା କିଏ ନେଇଯାଉ । ଧନ ସମ୍ପଦ ଯାଉ । ଖାଲି ମୋ ପ୍ରାଣର ସଞ୍ଜାଳ ମେରିଗୋଲଡ଼କୁ କେହି ଫେରାଇଦେଉ ।" ସେ ବ୍ୟାକୁଳରେ ଚାରିଆଡ଼କୁ ଚାହିଁଲେ, ଯେତେ ଅବା ଅତଳ ସମୁଦ୍ରରେ ସେ ବୁଡ଼ିଯାଇ ଆଶ୍ରୟ ଖୋଜୁଛନ୍ତି ।

ଏହି ସମୟରେ ସେ ଦେବତା ପୁଣି ଦେଖାଦେଇ ପଚାରିଲେ, "ମିଦାସ ! ତୁ ଯେଉଁ ବର ପାଇଛୁ ସେଥିରେ ଖୁସି ତ ?"

ମିଦାସ ଦେବତାଙ୍କ ପାଦତଳେ ପଡ଼ିଯାଇ କହିଲେ, "ପ୍ରଭୁ ! ମୁଁ ଯେଉଁ ବର ମାଗିଥିଲି, ସେ ବର ନୁହେଁ ଘୋର ଅଭିଶାପ । ଜଗତରେ ଏବେ ମୋ ଭଳି ଦୁଃଖୀ କେହି ନ ଥିବେ । ଏତେ ସୁନା ଭିତରେ ରହି ମଧ୍ୟ ମୁଁ ଟିକିଏ

ନହେଲେ ସୁଖ ପାଇନାହିଁ । ଯେଉଁ ସ୍ନେହ ଶ୍ରଦ୍ଧା ପାଇଁ ମଣିଷ ବଞ୍ଚିରହିବାକୁ ଚାହେଁ ତା ମୋର ନାହିଁ । ମୋର ଝିଅକୁ ଦେଖନ୍ତୁ । ଏ ସୁନାର ପିତୁଳାକୁ କି ସ୍ନେହ କରିହେବ ? ମୋର ସୁନାରେ ଦରକାର ନାହିଁ । ମୋତେ ଦୟା କରନ୍ତୁ । ଆପଣଙ୍କର ବର ଫେରାଇନିଅନ୍ତୁ । ମୋତେ ମୋର ମେରିଗୋଲଡ଼କୁ ଫେରାଇଦିଅନ୍ତୁ ।”

ଦେବତା କହିଲେ, “ତେବେ ଏଥିଭିତରେ ତୁ କିଛି ଶିଖିପାରିଛୁ । ଏବେ କହିଲୁ—ସୁନାର ମୂଲ୍ୟ ବେଶି ନାଁ ଗିଲାସେ ପାଣିର ମୂଲ୍ୟ ବେଶି ?”

ମିଡାସ କହିଲେ—“ବିଧାତା ମଣିଷ ପାଇଁ ଯେଉଁ ପାଣି ସୃଷ୍ଟି କରିଛନ୍ତି ତାର ମୂଲ୍ୟ ନିଶ୍ଚୟ ବେଶି । ସତେ ମୁଁ ପୁଣି ସେ ଅମୂଲ୍ୟ ପାଣି ପିଇପାରିବି ?”

ଦେବତା ପୁଣି ପଚାରିଲେ—“ଆଚ୍ଛା, ଖଣ୍ଡିଏ ରୁଟି ଚାହୁଁ କି ସୁନା ଖଣ୍ଡେ ଚାହୁଁ ?”

ମିଡାସ କହିଲେ—“ଖଣ୍ଡେ ରୁଟି ସାଙ୍ଗରେ ପୃଥିବୀଯାକର ସୁନା ସମାନ ହୋଇ ନ ପାରେ । ରୁଟି ମନୁଷ୍ୟର ପ୍ରାଣରକ୍ଷା କରିବ, ସୁନା କଣ ତା’ କରିପାରିବ ?”

ଦେବତା ପୁଣି ପଚାରିଲେ—“କହ ଦେଖି, ତୁ ସଂସାରର ସବୁ ସୁନା ନେବାକୁ ଚାହୁଁ ନା ମେରିଗୋଲ୍‌ଡ଼କୁ ଫେରିପାଇବାକୁ ଚାହୁଁ ?”

ମିଡାସ କହିଲେ—“ମୋର ସୁନା ଲୋଡ଼ାନାହିଁ, ଧନ ସମ୍ପତ୍ତି କିଛି ମୁଁ ଚାହେଁ ନାହିଁ । ମୋର ମେରିଗୋଲ୍‌ଡ଼କୁ ଫେରାଇଦିଅନ୍ତୁ । ମୋତେ ଏତିକି ଅନୁଗ୍ରହ କରନ୍ତୁ ।”

ଦେବତା ହସି କହିଲେ—“ଯାହାହେଉ, ତୋର ସୁବୁଦ୍ଧି ଆସିଛି । ତୋର ହୃଦୟଟା ପଥର ହୋଇଯାଇ ନାହିଁ । ଏବେ ତୁ ଶିଖିଲୁ—ଭଗବାନ୍ ପାଣି, ପବନ, ଖାଦ୍ୟ ଭଳି ଯେଉଁସବୁ ସାଧାରଣ ଜିନିଷ ମଣିଷ ଜାତିପାଇଁ ଗଢ଼ିରଖିଛନ୍ତି ତାର ମୂଲ୍ୟ ସୁନା ରୁପାର ମୂଲ୍ୟଠାରୁ ଢ଼େର୍ ବେଶି । ଏବେ କହ ଦେଖି, ତୁ ଏହି ବର ରଖିବାକୁ ଚାହୁଁ ?”

ମିଡାସ କହିଲେ—“ନାଁ ନାଁ, ମୋର ସେ ବର ଆଦୌ ଲୋଡ଼ାନାହିଁ । ଜଗତରେ ଯଦି କିଛି ଘୃଣାର ବସ୍ତୁ ଥାଏ ତେବେ ତାହା ହେଉଛି ସୁନା । ଆପଣଙ୍କର ବର ଫେରାଇନେଇ ମୋତେ ରକ୍ଷାକରନ୍ତୁ ।”

ରଜାଙ୍କ ଦୁଃଖରେ ଦେବତାଙ୍କ ହୃଦୟ ତରଳିଗଲା । ସେ ସ୍ନେହରେ କହିଲେ, "ରଜା, ତୋର ଝିଅକୁ ଫେରପାଇବୁ । ମୁଁ ମୋର ବର ଫେରାଇ ନେଉଛି । ବଗିଚା ପାଖରେ ଯେଉଁ ନଈ ବହିଯାଉଛି, ଯାଆ ସେଥିରେ ବୁଡ଼ ଗାଧୋଇବୁ । ଗୋଟିଏ ପାତ୍ରରେ ସେଥିରୁ ଜଳ ଆଣି ଆସିବୁ । ତୁ ଯାହା ସବୁ ଛୁଇଁ ସୁନା କରିଛୁ, ତାହା ଉପରେ ସେହି ଜଳ ଢ଼ାଳିଲେ ସେସବୁ ପୂର୍ବ ରୂପ ଫେରପାଇବେ । ଏହା କରିପାରିଲେ ସୁନାପାଇଁ ତୋର ଲୋଭ ଛୁଟିଯିବ ।"

ରଜା ମିଦାସ ଦେବତାଙ୍କ ପାଦତଳେ ପଡ଼ି ପ୍ରତିଜ୍ଞା କଲେ, "ଆଉ କେବେହେଲେ ଧନ ଲୋଭ କରିବ ନାହିଁ । ଈଶ୍ୱର ଯାହାକିଛି ସୃଷ୍ଟି କରିଛନ୍ତି ତାକୁ ଭଲପାଇବ ।"

ରଜା ଉଠି ଦେଖିଲେ ଦେବତା ଉଭେଇଯାଇଛନ୍ତି । ମୁହୂର୍ତ୍ତେ ଡେରି ନ କରି ରଜା ନଈକୁ ଦଉଡ଼ିଲେ । ଦେହରୁ ପୋଷାକ କାଢ଼ିବା କଥା ଭୁଲିଯାଇ ସେ ନଈ ଭିତରକୁ ପଶି ପାଣିରେ ବୁଡ଼ ଉଠିଲେ । ଥଣ୍ଡାପାଣି ବାଜିଲାରୁ ତାଙ୍କ ଦେହ ସହିତ ମନ ବି ଥଣ୍ଡାହୋଇଗଲା । ସେ ମନେକଲେ ତାଙ୍କ ଛାତି ଉପରୁ ଗୋଟାଏ ବୋଝ ଖସିପଡ଼ିଲା । ସତେ କଅଣ ତାଙ୍କର ଅଭିଶପ୍ତ ବର ଚାଲିଯାଇଛି !

ପାଣି ମାଠିଆ ଧରି ସେ ପାଗଳ ପରି ଆଗ ମେରିଗୋଲ୍ଡ଼ ପାଖକୁ ଧାଇଁ ଆସିଲେ ଓ ତା' ଉପରେ ପାଣି ଢ଼ାଳିଦେଲେ । ଦେହୁଁ ଦେହୁଁ ମୁଣ୍ଡର ସୁନା ଧୂତାପରି ବାଳଗୁଡ଼ାକ ପୁଣି ଆଗ ରଙ୍ଗ ଧରିଲା । ମୁହଁରେ ପୁଣି ଗୋଲାପ ରଙ୍ଗର ଆଭା ଖେଳିଗଲା । ସୁନାର ଦେହ ଗଳିଗଲା । ସେ ପୂର୍ବ ଦେହଧରି ଆଖିମେଲି ଦେଖେ ତ ବାପା ତା' ଉପରେ ପାଣି ଢ଼ାଳୁଛନ୍ତି । ସେ ଆଶ୍ଚର୍ଯ୍ୟ ହୋଇ କହିଲା, "ବାପା, ବାପା, ଏ କଅଣ କରୁଛ ? ମୋ ଜାମା ଓଦା ହୋଇଗଲା । ମୋତେ ଶୀତ କରୁଛି ।"

ମିଦାସଙ୍କର ଆନନ୍ଦ ଦେଖେ କିଏ ? ସେ ଝିଅକୁ କୋଳକୁ ଟେକିନେଇ ଚୁମା ଦେବାକୁ ଲାଗିଲେ । ରଜା ପାଣିମାଠିଆ ଧରି ରଜବାଟୀର ଘରଦ୍ୱାର, ବାଡ଼ ବଗିଚା ସବୁଆଡ଼େ ପାଣି ଛିଞ୍ଚିଗଲେ । ସବୁ ପୂର୍ବପରି ହୋଇଗଲା । ଝିଅକୁ ସେ ପୁଣି ଗୋଲାପ ବଗିଚାକୁ ନେଇଗଲେ । ମେରିଗୋଲଡ଼ ଦେଖିଲା,

ଗଛରେ ଆଗଭଳି ଫୁଲ ଫୁଟିଛି । ସେ ଆନନ୍ଦରେ କେତୋଟି ଫୁଲ ତୋଳି ବାପାଙ୍କୁ ଦେଇ କହିଲା, "ଦେଖିଲ ବାପା, ଏ ଫୁଲଗୁଡ଼ିକ କେଡ଼େ ସୁନ୍ଦର !"

ସେହିଦିନଠାରୁ ମିଦାସଙ୍କର ସୁନାଲୋଭ ତୁଟିଗଲା । ସେ ଭଣ୍ଡାରଘର ଫିଟାଇ ସବୁ ସୁନା ପ୍ରଜାଙ୍କ ଭିତରେ ବାଣ୍ଟିଦେଲେ । ସେମାନଙ୍କୁ କହିଲେ, "ଈଶ୍ୱର ଆମମାନଙ୍କ ପାଇଁ ଦେଇନାହାନ୍ତି କଅଣ ! ପାଣି ପବନ ଯିଏ ଯେତେ ନେଲେ ସରିବ ନାହିଁ । ମାଟିକୁ ଚାଷକର—ଖାଦ୍ୟର ଅଭାବ ରହିବ ନାହିଁ ।"

ତାଙ୍କ ଦେଶର ଲୋକେ ସୁଖରେ ରହିଲେ । କେହି ପରଧନକୁ ଚାହିଁଲେ ନାହିଁ ।

---

# ପାଣ୍ଡୋରାର ବାକ୍ସ

ଆଜ ଆମେ ପୃଥିବୀକୁ ଯେପରି ଦେଖୁଛୁ, ହଜାର ହଜାର ବର୍ଷ ତଳେ ତାହା ସେପରି ନଥିଲା । ଏବେ ଦେଖାଯିବ କିଏ ବୁଢ଼ା, କିଏ ପିଲା, କିଏ ସୁସ୍ଥ, କିଏ ରୋଗୀ, କିଏ ଧନୀ, କିଏ ଗରିବ । ମାତ୍ର ସେଇ ପୂର୍ବକାଳରେ ପୃଥିବୀ ଭିନ୍ନ ଥିଲା । ସମସ୍ତେ ଥିଲେ ପିଲା । ପୁଅ ଝିଅ ସବୁ ଆନନ୍ଦରେ ଥିଲେ । କାହାରି ରୋଗ ନଥିଲା କି କିଛି ଦୁଃଖ ନଥିଲା । କେହି ବୁଢ଼ା ହେଉ ନଥିଲେ କି ମରୁନଥିଲେ । ଖାଇବା ପିଇବା ବିଷୟରେ କାହାରି ଚିନ୍ତା ନଥିଲା । ଯାହାର ଯାହା ଇଚ୍ଛା ସେ ଗଛରୁ ତୋଳିଆଣି ଖାଉଥିଲା । ବଡ଼ ଆଶ୍ଚର୍ଯ୍ୟର କଥା, ଏତେ ପିଲା ଥିଲେ, ହେଲେ ସେମାନଙ୍କ ଭିତରେ କେବେହେଲେ କଳି କଜିଆ ନଥିଲା ।

ଏବେ ଏତେ ଦୁଃଖ କାହୁଁ ଆସିଲା, ଲୋକେ ଏତେ କଷ୍ଟ ପାଇଲେ କାହିଁକି—ସେ କଥା ଶୁଣ ।

ଏପିମିଥସ ବୋଲି ଗୋଟିଏ ବାଳକ ଥିଲା । ସେ ଅନ୍ୟ ପୁଅ ଝିଅଙ୍କ ସଙ୍ଗେ ଖେଳିବୁଲି ଦିନ କାଟୁଥିଲା । ସେ ଗୋଟିଏ କୁଡ଼ିଆରେ ରହୁଥାଏ । ଦିନେ ପାଣ୍ଡୋରା ବୋଲି ଗୋଟିଏ ଝିଅ ଆସି କହିଲା, "ଏପିମିଥସ, ମୁଁ ତମ ଘରେ ରହିବି । ଦୁହେଁଯାକ ସାଙ୍ଗହୋଇ ଖେଳିବା, ବୁଲିବା ।"

ଏପିମିଥସ ମନାକରିବ କାହିଁକି ? ଦୁହେଁଯାକ ଏକାଠି ରହିଲେ । ହସ ଖେଳରେ ଦିନଗୁଡ଼ିକ କଟିଯାଉଥାଏ । ଦିନେ ପାଣ୍ଡୋରା ଦେଖିଲା, କୁଡ଼ିଆ ଭିତରେ ଗୋଟାଏ ବଡ଼ ବାକ୍ସ ରହିଛି । ପାଣ୍ଡୋରା ପଚାରିଲା, "ଏପିମିଥସ, ଏ ବାକ୍ସରେ କଅଣ ଅଛି ? ଏହାକୁ କିଏ ଆଣି ରଖିଲା ?" ମାତ୍ର ଏପିମିଥସ କିଛି କହିଲା ନାହିଁ ।

ପାଣ୍ଡୋରା ଅନ୍ୟ ପିଲାଙ୍କ ସାଥିରେ ଖେଳେ, ବୁଲେ ଓ ଗଛରୁ ଫଳ ତୋଳି ଖାଏ । ମାତ୍ର ସେ ଅଦ୍ଭୁତ ବାକ୍ସଟାର କଥା ଭୁଲିପାରେ ନାହିଁ । ସେ ଏପିମିଥସକୁ କେତେଥର ପଚାରିଲା—ବାକ୍ସ କାହୁଁ ଆସିଲା, ସେଥିରେ କଅଣ ଅଛି ? ମାତ୍ର କିଛି ଉତ୍ତର ପାଏ ନାହିଁ ।

କିନ୍ତୁ ପାଣ୍ଡୋରାର ମନ ଥୟ ହୁଏ ନାହିଁ । ଅନେକଥର ପଚାରିବାରୁ ଦିନେ ଏପିମିଥସ କହିଲା,"ଜଣେ ଲୋକ ସେ ବାକ୍ସଟା ଏଠାରେ ରଖି ମୋତେ ଜଗି ରଖିବାକୁ କହିଯାଇଛି । ତା' ଭିତରେ କଅଣ ଅଛି ମୁଁ ଜାଣେନା । କଅଣ ଗୁପ୍ତ ଜିନିଷ ହୋଇଥିବ । ତୁ ସେ କଥା ମୋତେ ଆଉ ପଚାରିବୁ ନାହିଁ ।"



ଦିନ ପରେ ଦିନ ଗଡ଼ିଚାଲିଲା । ପାଣ୍ଡୋରା ଖେଳ ବୁଲୁଥାଏ, ମାତ୍ର ତା' ମନଥାଏ ସେହି ବାକ୍ସଟିରେ । ପୁଣି ଥରେ ସେ ଏପିମିଥସକୁ ପଚାରିଲା, "କହ, ସେ ବାକ୍ସ କିଏ ଆଣି ରଖିଲା ? ସେଥିରେ କି ଗୁପ୍ତ ଜିନିଷ ଅଛି ?" ଏପିମିଥସ କେତେ ଚୁପ୍‌ହୋଇ ରହିବ ? ଶେଷକୁ ସେ କହିଲା, "ସେ ବାକ୍ସ

ଭିତରେ କଅଣ ଅଛି ମୁଁ ତ ନିଜେ ଜାଣେନି, ତୋତେ କପରି କହିବି ? ଯିଏ ତାକୁ ଏଠି ରଖିଯାଇଛି, ସେ ଦେଖିବାକୁ ଗୋଟିଏ ସୁନ୍ଦର ଲୋକ । ତା' ମୁହଁରେ ହସଲାଗିରହିଥାଏ । ତା' ମୁଣ୍ଡରେ ଗୋଟାଏ ଟୋପି । ଆଶ୍ଚର୍ଯ୍ୟର କଥା, ସେ ଟୋପିର ଦୁଇପାଖେ ଚଢ଼େଇର ଡେଣାପରି ଗୋଟାଏ ଗୋଟାଏ ଡେଣା ଥିଲା ।"

ପାଣ୍ଡୋରା ପଚାରିଲା, "ସେ ହାତରେ ଗୋଟାଏ ବାଡ଼ି ଧରିଥିଲା କି ?"

ଏପିମିଥିସ କହିଲା, "ହଁ, ହଁ—ହାତରେ ସେ ଗୋଟାଏ ବାଡ଼ି ଧରିଥିଲା । ତା' ବାଡ଼ିଟା ବି ଅଦ୍ଭୁତ । ଦୁଇଟା ସାପ ଗୁଡ଼େଇ ହୋଇପରି ଦିଶୁଥାଏ । ମୁଁ ତ ପ୍ରଥମେ ତାକୁ ଦୁଇଟା ଜିଅନ୍ତା ସାପ ବୋଲି ମନେକରିଥିଲି ।"

ପାଣ୍ଡୋରା କହିଲା, "ସେ କିଏ ଏବେ ମୁଁ ଜାଣିଲି । ସେ ହେଉଛନ୍ତି ମର୍କୁରି । କେବଳ ତାଙ୍କରି ବାଡ଼ିଟି ଦୁଇଟା ସାପ ଗୁଡ଼େଇ ହୋଇପରି ହୋଇଥାଏ । ସେଇ ତ ମୋତେ ଏଠି ଛାଡ଼ିଦେଇ ଯାଇଛନ୍ତି । ବୋଧହୁଏ ସେ ଏହି ବାକ୍ସରେ ଆମପାଇଁ ଭଲ ଭଲ ପୋଷାକ, ଖେଳନା ପ୍ରଭୃତି ରଖିଛନ୍ତି । ନ ହେଲେ ଭଲ ଖାଇବା ଜିନିଷ ହୋଇଥିବ । ଆ, ଦେଖିବା ସେଥିରେ କଅଣ ଅଛି ।"

ମାତ୍ର ଏପିମିଥିସ ସେଥିରେ ରାଜି ନ ହୋଇ କହିଲା, "ସେଥିରେ ଯାହା ଥାଉ, ଆମେ ତାକୁ ଫିଟାଇବା ନାହିଁ । ଏଥର ସେ ଆସିଲେ ତାଙ୍କୁ କହିବା— ସେ ଅନୁମତି ଦେଲେ ଫିଟାଇ ଦେଖିବା । ହୁଏତ ସେ ନିଜେ ବାକ୍ସ ଖୋଲି ଆମକୁ ଖେଳନା ଦେବେ ।" ଏହା କହି ଏପିମିଥିସ ଅନ୍ୟ ପିଲାଙ୍କ ସାଥିରେ ଖେଳିବାକୁ ଚାଲିଗଲା ।

ସେ ଯିବାପରେ ପାଣ୍ଡୋରା କୁଡ଼ିଆ ଭିତରେ ବସି ମନେ ମନେ ଭାବିଲା, "ଏଇଟା ଗୋଟାଏ କେମିତି ପିଲା ? ଯେତେ କହିଲେ ଶୁଣୁନାହିଁ । ବାକ୍ସ ଭିତରଟା ଖୋଲି ଦେଖିଲେ କ୍ଷତି କଅଣ ହୁଅନ୍ତା ?"

ସେ ବାକ୍ସଟିକୁ ଚାହିଁରହିଲା । କି ସୁନ୍ଦର ଦାମିକା କାଠରେ ତିଆରି ! ଖୁବ୍ ପାଲିସ ହୋଇଛି । ଚାହିଁଲେ ସେଥିରେ ଆପଣା ମୁହଁ ଦିଶୁଛି । ଚାରିପାଖେ କେତେ ସୁନ୍ଦର ଫୁଲ ଓ ପତ୍ରର ଛବି ଖୋଳାହୋଇଛି । ଢାଙ୍କୁଣୀ ଉପରେ ଗୋଟିଏ ପିଲାର ଛବି । ପାଣ୍ଡୋରା ବାକ୍ସ ପାଖରେ ଛିଡ଼ାହୋଇ ସେ ଛବିକୁ ଚାହିଁଲା । ତାର ମନେହେଲା, ସତେ ଅବା ପିଲାଟି ହସି ହସି ତାକୁ କହୁଛି—

ବାକ୍ସଟା ଫିଟାଇ ଦେଖୁନାହୁଁ କାହିଁକି ? ଦେଖିଲେ କଅଣ ଦୋଷ ଲାଗିଯିବ ? ବାକ୍ସ ଭିତରେ କେତେ କଉତୁକିଆ ଜିନିଷ ଥିବ ।

ପାଣ୍ଡୋରା ସେ ଛବିକି ଯେତିକି ଚାହିଁଲା, ତା' ମନ ସେତିକି ଅଥୟ ହେଲା । ବାକ୍ସଟା ଗୁଡ଼େଇ ହେଇନଥିଲା, ଖାଲି ଗୋଟାଏ ସୁନେଲି ସୂତାରେ ବନ୍ଧା ହୋଇ ଗଣ୍ଠି ପଡ଼ିଛି । ପାଣ୍ଡୋରା ଝରକାବାଟେ ବାହାରକୁ ଚାହିଁଲା—ପିଲାମାନେ ଆପଣା ଆପଣା ଖେଳରେ ମାତିଛନ୍ତି । ସେମାନଙ୍କର ଆନନ୍ଦଧ୍ୱନି ଶୁଣାଯାଉଛି । କଅଁଳିଆ ଖରା ପଡ଼ିଛି । ସମସ୍ତେ ମଉଜ କରୁଛନ୍ତି । ଖାଲି ପାଣ୍ଡୋରା ଘର ଭିତରେ ଏକୁଟିଆ ରହି ବାକ୍ସ କଥା ଭାବୁଛି । ତା' ମନ ଆଉ କାହିଁରେ ନାହିଁ ।

ସେ ବାକ୍ସ ଉପରେ ଥିବା ଛବିଟିକୁ ଚାହିଁ ସୁନେଲି ସୂତାରେ ହାତ ମାରୁଛି । ତାକୁ ଜଣାଗଲା—ଚିଟିଟି ଖୁବ୍ ହସୁଛି । ଠିକ୍ ଏତିକିବେଳକୁ ପାଣ୍ଡୋରା ଦେଖିଲା, ସୂତାର ଗଣ୍ଠି ଫିଟିଯାଇଛି । ହଠାତ୍ ତା' ମନରେ ଗୋଟାଏ ଭୟ ପଶିଗଲା । ଏପିମିଥିସ ତାକୁ କଅଣ କହିବ ? ସେ ଭାବିବ, ମୁଁ ଜାଣିଶୁଣି ବାକ୍ସଟି ଫିଟାଇଛି । ସେ ସୂତାରେ ପୁଣି ଗଣ୍ଠି ପକାଇ ଦେବାକୁ ବସିଲା । ସେ ନାନାପ୍ରକାରେ ଚେଷ୍ଟାକଲା, ମାତ୍ର ଆଉ ଗଣ୍ଠି ପଡ଼ିଲା ନାହିଁ । ସେ ଭାବିଲା, "ଆଉ ଟିକିଏ ପରେ ଏପିମିଥିସ ଆସିବ । ସେ ଦେଖିବ ଯେ ସୂତା ଗଣ୍ଠି ଫିଟିଛି । ମୁଁ ଯେ ବାକ୍ସ ଭିତର ଦେଖିନାହିଁ, ଏ କଥା ସେ କଅଣ ସତ ମଣିବ ?" ସେ କଅଣ କରିବ କିଛି ଥୟ କରିପାରିଲା ନାହିଁ । ବାକ୍ସ ଉପରେ ଭରାଦେଇ ସେ ଛିଡ଼ାହୋଇ ରହିଲା । ଏଇ ସମୟରେ ତା' କାନପାଖରେ ଶୁଣାଗଲା "ପାଣ୍ଡୋରା, ଆମକୁ କାଢ଼ିଦେ । ଆମେ ବାହାରକୁ ଗଲେ ତୁ ଆମ ସାଥିରେ ଖେଳିବୁ । ଖାଲି ଆମକୁ ବାହାରକରିଦେଲେ ହେଲା ।"

ଶବ୍ଦ କେଉଁଠୁ ଆସୁଛି ? ପାଣ୍ଡୋରା ପ୍ରଥମେ ଚମକିପଡ଼ିଲା । ପୁଣି ସେହି ନରମ ସ୍ୱର ଶୁଣାଗଲା, "ପାଣ୍ଡୋରା, ଆମକୁ ବାହାର କରିଦେ ।" ପାଣ୍ଡୋରା ଏଥର କାନଡେରି ଶୁଣିଲା । ସେ ଜାଣିପାରିଲା, ଏ ଶବ୍ଦ ସେହି ବାକ୍ସ ଭିତରୁ ବାହାରୁଛି । ସେ ଭାବିଲା, "ତେବେ ମୋରି ଭଳି ପିଲା ଏହା ଭିତରେ ଅଛନ୍ତି । ଟିକିଏ ଭିତରକୁ ଚାହିଁ ଦେଖିଲେ ଦୋଷ କଅଣ ?" ସେ ଢାଙ୍କୁଣୀକୁ ଟେକିବାକୁ ହାତରେ ଧରିଲା ।

ଠିକ୍ ଏତିକବେଳକୁ ଏପିମିଥସ ଆସି ଦୁଆରେ ପହଞ୍ଚିଗଲା । ସେ ଯେବେ ପାଟିକରି ବାକ୍ସ ଫିଟାଇବାକୁ ପାଣ୍ଡୋରାକୁ ମନାକରି ଦେଇଥାନ୍ତା, ତେବେ ରକ୍ଷା ମିଳିଥାନ୍ତା, ବାକ୍ସରେ କଅଣ ଅଛି କେହି ଜାଣିପାରିନଥାନ୍ତେ । ସେ ଦୁଆରମୁହଁରୁ ଦେଖିଲା, ପାଣ୍ଡୋରା ବାକ୍ସ ଖୋଲୁ ଛି । ମାତ୍ର ସେ ତାକୁ ମନାକଲାନାହିଁ । ଅସଲ କଥାଟି ହେଉଛି, ବାକ୍ସ ଭିତରେ କଅଣ ଅଛି ଜାଣିବାକୁ ତାର ମଧ୍ୟ ମନ ଉଚ୍ଛନ୍ନ ହେଉଥାଏ । ସେ ଚୁପ୍‌କରି ଦୁଆରମୁହଁରେ ଠିଆହୋଇ ରହିଲା ।



ପାଣ୍ଡୋରା ଢାଙ୍କୁଣୀଟା ଟେକିଲାମାତେ କୁଡ଼ିଆ ଭିତର ଅନ୍ଧାର ହୋଇ-ଗଲା । ଆକାଶରୁ ଘଡ଼ଘଡ଼ିର ଶବ୍ଦ ଶୁଣାଗଲା । ସେ ବାକ୍ସ ଭିତରକୁ ଚାହିଁଲାକ୍ଷଣି ସେଥିରୁ ବହୁତ୍‌ପରି ଗୁଡ଼ାଏ ମାଛି ବାହାରି ତା ଦେହ ମୁହଁକୁ ବନ୍ଧ

ଦେଇ ଘରଯାକ ଉଡ଼ିଲେ । ଏପିମିଥସକୁ ଏତେ କଷ୍ଟ ହେଲା ଯେ ସେ ବଡ଼ପାଟି କରି କାନ୍ଦିଉଠିଲା । ଏପିମିଥସ ଦୁଆରମୁହଁରେ ଠିଆହୋଇଥିଲା । ସେ ପୋକରୁ ଗୁଡ଼ାଏ ଉଡ଼ିଆସି ତାକୁ ମଧ ନାହୁଡ଼ ମାରିବାକୁ ଲାଗିଲେ । ସେ ବିକଳ ହୋଇ ପାଟିକଲା—"ଓଃ ମରିଗଲି ! ପାଣ୍ଡୋରା, ପାଣ୍ଡୋରା, ତୁ କଅଣ କଲୁ ? କାହିଁକି ସେ ବାକ୍ସଟା ଫିଟାଇଲୁ ?"

ବିରୁଡ଼ି ଭଳି ଛୋଟ ଜୀବ ହେଲେ କଅଣ ହେବ ସେମାନଙ୍କର ଗଣଗଣ ଶବ୍ଦରେ କାନ ଅତଡ଼ା ପଡ଼ିଲା । ସେମାନଙ୍କ ନାହୁଡ଼ର ବିଷରେ ପିଲା ଦୁଇଟା ମଲାପରି ହୋଇଗଲେ । ସେମାନେ କଷ୍ଟରେ ଛଟପଟ ହୋଇ ଡେଇଁଲେ ।

ଏ ବାକ୍ସ ଭିତରେ ସବୁ ମନ୍ଦଚିନ୍ତା, ଦୁଃଖ, ରୋଗ, ମୃତ୍ୟୁ ବନ୍ଦହୋଇ-ଥିଲେ । ତେଣୁ ପୃଥିବୀର ପିଲାମାନେ ଏସବୁ କଅଣ ଜାଣିନଥିଲେ । ଏବେ ପାଣ୍ଡୋରା ବାକ୍ସଟି ଫିଟାଇଦେବାରୁ ସେମାନେ ବାହାରିପଡ଼ି ପୃଥିବୀଯାକ ବ୍ୟାପିଗଲେ । ସେମାନେ ଯାହାକୁ ଦେଖିଲେ ତାକୁ ନାହୁଡ଼ରେ ବିନ୍ଧିଦେଲେ । ଏଣିକି ପିଲାଙ୍କ ମୁହଁରେ ହସ ଦେଖାଗଲା ନାହିଁ । କାଳକଯାକ ପିଲା ନ ରହି ସେମାନେ ବୁଢ଼ା ବୁଢ଼ୀ ହେଲେ । ସେମାନଙ୍କ ଭିତରେ ରୋଗ ଦେଖାଗଲା । ଗଛରେ ଆଉ ସବୁକାଳେ ଫୁଲ ଫଳ ରହିଲା ନାହିଁ । ଅଳ୍ପଦିନ ପରେ ସେ ସବୁ ଶୁଖି ଝଡ଼ିପଡ଼ିଲା । ପିଲାଙ୍କର ସୁଖର ଦିନ ସରିଗଲା ।

ନାନା କଷ୍ଟ ସହି ସହି ପାଣ୍ଡୋରା ଓ ଏପିମିଥସ କୁଡ଼ିଆ ଭିତରେ ରହିଥାନ୍ତି । ଏହାପୂର୍ବରୁ କଷ୍ଟ କ'ଣ ସେମାନେ ଜାଣିନଥିଲେ । ନିଜ ଦୋଷରୁ ସେମାନଙ୍କର ଏପରି ଦଶା ହୋଇଛି । ଏହା ଭାବିଲାକ୍ଷଣି ସେମାନଙ୍କୁ କାନ୍ଦମାଡ଼େ । ଏବେ ଦୁହିଁଙ୍କ ଭିତରେ ଆଗଭଳି ମନ ମିଳେ ନାହିଁ, କଳିକଜିଆ ଲାଗେ । ଏହିପରି କେତେଦିନ ଗଲା ।

ଦିନେ ପାଣ୍ଡୋରା ବାକ୍ସକୁ ଆଉଜି ତଳେ ବସିଥିଲା । କୁଡ଼ିଆର ଗୋଟିଏ କଣରେ ପାଣ୍ଡୋରା ଆଡ଼କୁ ପିଠିକରି ଏପିମିଥସ ବସିଥାଏ । କେହି କାହାକୁ କିଛି କହୁନଥାନ୍ତି । ଏପିମିଥସ ଭାବୁଥାଏ, ଖାଲି ପାଣ୍ଡୋରାର ଦୋଷ କଅଣ—ସେ ବି ଦୋଷୀ ।

ଏଇ ସମୟରେ ବାକ୍ସ ଭିତରୁ ଠକ୍ ଠକ୍ ଶବ୍ଦ ହେଲା । ପାଣ୍ଡୋରା ଆଶ୍ଚର୍ଯ୍ୟ ହୋଇ ଉଠି ଠିଆହେଲା । ପୁଣି ଶୁଭାଗଲା ଠକ୍ ଠକ୍ ଶବ୍ଦ । ଶବ୍ଦଟା ଯେ ବାକ୍ସ ଭିତରୁ ଆସୁଛି, ସନ୍ଦେହ ନାହିଁ । ସେ ଭାବିଲା, ବାକ୍ସ ଭିତରେ ଏତେ

ଦୁଷ୍ଟ ଜୀବ ଥିଲେ । ସମସ୍ତେ ବାହାରିଆସିଛନ୍ତି । ହୁଏତ ସେଥିରୁ ଗୋଟାଏ ରହିଯାଇଛି । ପାଣ୍ଡୋରା ପଚାରିଲା, "ତୁ କିଏ ?"

କଅଁଳିଆ ସ୍ୱରରେ ବାକ୍ସ ଭିତରୁ କିଏ କହିଲା, "ପାଣ୍ଡୋରା, ଢାଙ୍କୁଣୀଟା ଟେକିଦେଲେ ଦେଖିବ ମୁଁ କିଏ ?"

ପାଣ୍ଡୋରା ଆହୁରି ଦୁଃଖର ଆଶଙ୍କା କରି କାନ୍ଦି କାନ୍ଦି କହିଲା, "ନା, ନା, ତା' ହବନି । ଥରେ ଢାଙ୍କୁଣୀ ଫିଟାଇ ଯେଉଁ ଫଳ ପାଇଛୁ, ସେଇ ଯଥେଷ୍ଟ । ଆଉ ଫିଟାଇବା ଦରକାର ନାହିଁ ।"

ପୁଣି ସେଇ କରୁଣ ସ୍ୱର ଶୁଣାଗଲା, "ପାଣ୍ଡୋରା, ମୁଁ ସେମାନଙ୍କ ଭଳି ନୁହେଁ । ମୋର ନାହୁଡ଼ ନାହିଁ କି ମୁଁ କାହାରି ଅପକାର କରେନାହିଁ । ମୋତେ ବାହାରକରିଦିଅ, ଦେଖିବ ତୁମର କିଛି କ୍ଷତି ହେବ ନାହିଁ, ବରଂ ଭଲହେବ ।"

ପାଣ୍ଡୋରାର ମନ ନରମ ହୋଇ ଆସିଥିଲା । ସେ ଏପିମିଥସକୁ ପଚାରିଲା, "ଆଉଥରେ ବାକ୍ସ ଫିଟେଇବି ?" ଏପିମିଥସ କହିଲା, "ଏତେ ଦୁଷ୍ଟ ଜୀବ ତ ବାହାରି ସାରିଲେଣି—ଆଉ ଗୋଟାଏ ଆସିଲେ କ୍ଷତି କଅଣ ?"

ପୁଣି ବାକ୍ସ ଭିତରୁ ଶବ୍ଦ ଆସିଲା, "ପାଣ୍ଡୋରା, ଏତିକି ବୁଝିପାରୁନାହୁଁ । ଏପିମିଥସର ମନ ମତେ ଦେଖିବାକୁ ଆକୁଳ ହେଲାଣି । ମତେ ବାକ୍ସରୁ ବାହାରକରିଦିଅ । ଦେଖିବ, ମୁଁ ତୁମର ଦୁଃଖରୁ କେତେ ହରିନେବି ।"

ପାଣ୍ଡୋରା ବାକ୍ସର ଢାଙ୍କୁଣୀଟି ଟେକିବାକୁ ବସିଲା । ଏପିମିଥସ ତାକୁ ସାହାଯ୍ୟ କଲା । ଦୁହେଁ ମିଶି ବାକ୍ସଟିକୁ ଖୋଲିଦେଲେ । ବାକ୍ସ ଭିତରୁ ବାହାରିପଡ଼ିଲା ପରୀଭଳି ଠିକ ଜୀବଟିଏ । ତା ଦେହରୁ ଆଲୁଅ ବାହାରୁଛି । ସେ ଘରଭିତରେ ଉଡ଼ିଲାବେଳକୁ ସବୁଆଡ଼ ଆଲୁଅ ହୋଇଯାଉଥାଏ । ସେ ଉଡ଼ିଆସି ପାଣ୍ଡୋରାକୁ ଏକ ଚୁମା ଦେଲା । ପାଣ୍ଡୋରାର ଦୁଃଖ କଷ୍ଟ କୁଆଡ଼େ ଉଭେଇଗଲା । ତା'ପରେ ସେ ଏପିମିଥସକୁ ସେହିପରି ଚୁମା ଦେଲା । ସେ ମଧ୍ୟ ନିଜର ଦୁଃଖ ଯନ୍ତ୍ରଣା ଭୁଲିଗଲା । ଏବେ ଦୁହିଁଙ୍କର ମନରେ ଆନନ୍ଦ । ଏ ଠିକ ପରୀଟିକୁ ବାହାରକରିନଥିଲେ ସେମାନଙ୍କର କଷ୍ଟ କିଏ ଦୂରକରିଥାନ୍ତା ?

ପାଣ୍ଡୋରା ପଚାରିଲା, "ତୁମେ କିଏ ?" ଉତ୍ତର ମିଳିଲା—ମୋ ନାଆଁଟି ହେଉଛି 'ଆଶା' । ମର୍କ୍ୟୁରି ବାକ୍ସ ଭିତରେ ସେ ଦୁଷ୍ଟ ଜୀବମାନଙ୍କ ସଙ୍ଗେ

ମଧ୍ୟ ରଖିଥିଲେ । ସେମାନଙ୍କର କାମ ହେଲା— ମଣିଷ ଜାତିକୁ କଷ୍ଟ ଦେବା । ମଣିଷ ଜାତି ଯେପରି ସେ କଷ୍ଟ ସହିପାରିବ, ସେଥିପାଇଁ ମୁଁ ସବୁବେଳେ ପାଖେ ପାଖେ ରହିଥାଏ ।”

ପାଣ୍ଡୋରା ଦେଖିଲା ଯେ ପରୀର ଡେଣାରେ ଇନ୍ଦ୍ରଧନୁର ସାତୋଟିଯାକ ରଙ୍ଗ ଅଛି । ସେ ଏହାର କାରଣ ପଚାରିବାରୁ ପରୀ କହିଲା,“ହିଁ, ସଂସାରଟାରେ ଭଲ ଆଉ ମନ୍ଦ ମିଶି ରହିଛି । ହସ ପାଖେ କାନ୍ଦ, ସୁଖ ପାଖେ ଦୁଃଖ ଲାଗିଥିବ । ସେଥିପାଇଁ ମୋ ଡେଣାରେ କେତେକ ଉଜ୍ଜ୍ୱଳ ରଙ୍ଗ ସାଥିରେ ମଳିନ ରଙ୍ଗ ବି ରହିଛି ।”

“ତୁମେ କଅଣ ଆମ ସାଥିରେ କାଳ-କାଳକୁ ରହିଥିବ ?”—ପାଣ୍ଡୋରା ପଚାରିଲା ।

ପରୀ ଉତ୍ତର କଲା, “ଯେତେଦିନଯାଏ ତୁମେ ମୋର ସାହାଯ୍ୟ ଲୋଡ଼ିବ ସେତେଦିନଯାଏ ଅବଶ୍ୟ ରହିବ । ମୁଁ ତୁମ ପାଖେ ପାଖେ ଥିବ । ବେଳେ ବେଳେ ତୁମେ ମତେ ଦେଖିପାରିବନାହିଁ । ପୁଣି ବେଳେ ବେଳେ ତୁମେ ମତେ ନଖୋଜୁଣୁ ମୁଁ ଆସି ଦେଖାଦେବ ।”

ପରୀର କଥା ସତ ହେଲା । ଦୁଷ୍ଟ ଜୀବଗୁଡ଼ାକ ପୃଥିବୀଯାକ ବୁଲି ଲୋକଙ୍କୁ ଦୁଃଖ କଷ୍ଟ ଦେଲେ, କିନ୍ତୁ ଆଶା ପାଖେ ପାଖେ ରହି ସେ ସବୁ କଷ୍ଟ ସହିବାକୁ ଲୋକଙ୍କୁ ବଳ ଦେଲା ।

ଏବେବି ଦୁନିଆରେ ସେଇ କଥା ଚାଲିଛି । ଯେତେ କଷ୍ଟ ହେଉ ପଛକେ ଆଶା ତାର ଦୁଃଖର ଭାରକୁ ଊଣାକରିଦେଉଛି । ଦୁଃଖମୟ ସଂସାରରେ ଆଶାହିଁ ମଣିଷର ଆଶ୍ରୟସ୍ଥଳ ହୋଇ ରହିଛି । ଆଶା ଆମକୁ ନୂଆ ଜୀବନ ଦେଉଛି ।

———

# ପକ୍ଷୀରାଜ ଘୋଡ଼ା ପେଗାସସ୍

ବହୁତଦିନ ତଳର କଥା । ଗ୍ରୀସ୍ ଦେଶରେ ଜଣେ ଯୁବକ ଦିନେ ସନ୍ଧ୍ୟାବେଳେ ଆସି ଗୋଟିଏ ଝରଣାକୂଳେ ବସିଲେ । ଝରଣାଟି କୁଳୁ କୁଳୁ ଶବ୍ଦ କରି ପାହାଡ଼ରୁ ବୋହି ଆସୁଥିଲା । ତାର ପାଣି ଅତି ନିର୍ମଳ, ଅତି ଥଣ୍ଡା । ଯୁବକ ସେହି ଝରଣାରୁ କିଛି ପାଣି ପିଇଲେ ।

ଏହି ସମୟରେ ଜଣେ ସୁନ୍ଦରୀ ସ୍ତ୍ରୀଲୋକ ମାଠିଆ ଧରି ଝରଣାରୁ ପାଣି ନେବାପାଇଁ ଆସିଲେ । ଯୁବକ ତାଙ୍କୁ ଏହି ଝରଣାର ନାମ ପଚାରିଲେ । ଯୁବତୀ କହିଲେ, "ଏହାର ନାମ ହେଉଛି ପିରିନ୍ । ଲୋକେ କହନ୍ତି, ପିରିନ୍ ନାମରେ ଗୋଟିଏ ମାଆର ଆଖିର ଲୁହ ଝରଣା ହୋଇ ବହିଯାଉଛି । ତାର ପୁଅଟିଏ ଥିଲା । ସେ ତାକୁ ନିଜ ଜୀବନଠାରୁ ବଳି ଭଲପାଉଥିଲା । ପିଲାଟି ମରିଯିବାରୁ ସେ କାନ୍ଦୁଛି । ତାର କାନ୍ଦ ଆଜିଯାଏଁ ବନ୍ଦ ହୋଇନାହିଁ । ତାର ଲୁହ ହେଉଛି ଏଇ ଝରଣାର ପାଣି ।"

ଯୁବକ କହିଲା, "ଓଃ, ଏଇ ତେବେ ହେଉଛି ପିରିନ୍ ନଈ ! ମୁଁ ଏହାକୁ ଖୋଜି ଖୋଜି ଏଠାରେ ପହଞ୍ଚିଛି ।"

ଜଣେ ଚାଷୀ ତା ବଳଦକୁ ପାଣି ପିଆଇବା ପାଇଁ ସେଠାକୁ ଆସିଲା । ସେ ଯୁବକଙ୍କ ହାତରେ ଘୋଡ଼ାର ଲଗାମ୍ ଦେଖି ପଚାରିଲା, "ତୁମେ ହାତରେ ଗୋଟିଏ ଲଗାମ୍ ଧରି ବୁଲୁଛ କାହିଁକି ? ତୁମ ଘୋଡ଼ାଟା କଅଣ ପଳାଇଗଲା ?"

ଏହି ଯୁବକର ନାମ ବେଲାରଫୋନ୍ । ଚାଷୀର ପ୍ରଶ୍ନ ଶୁଣି ସେ କହିଲେ, "ନା, ନା, ମୋର ଘୋଡ଼ା ହଜି ନାହିଁ । ତୁମେ ପକ୍ଷୀରାଜ ଘୋଡ଼ା ପେଗାସସ୍‌ର ନାଆଁ ଶୁଣିଥିବ । ତାର ଯୋଡ଼ାଏ ଡେଣା ଅଛି । ସେ ଉଡ଼ିପାରେ । ସେ ଏଇ ଝରଣାକୁ ପାଣି ପିଇବାକୁ ଆସେ ବୋଲି ଶୁଣି ମୁଁ ଏଠାକୁ ଆସିଛି ।"

ଚାଷୀ କହିଲା, "ତେବେ ତୁମେ ଆସିଛ ପକ୍ଷୀରାଜ ଘୋଡ଼ାକୁ ଧରି ନେବା ପାଇଁ ? ତୁମେ କି ସେଇ ପକ୍ଷୀରାଜ ଘୋଡ଼ା କଥା ସତ ମଣୁଛ ? ହେଲା,

ପକ୍ଷୀରାଜ ଘୋଡ଼ାକୁ ଧରିଲ, ତାକୁ ନେଇ କଅଣ କରିବ ? ସେ କଅଣ ହଳ କରିବ, ନା ଗାଡ଼ି ଟାଣିବ ?”

ବେଲରଫୋନ୍ ଦେଖିଲେ ବୁଢ଼ା ଚାଷୀର ମୁହଁ ହସ ହସ । ସେ ପଚାରିଲେ, “ଅଜା, ତୁମକୁ ଷାଠିଏ କି ସତୁରି ବର୍ଷ ହେବଣି । ତମେ ପିଲାଦିନେ କେବେ ସେ ପେଗାସସ୍କୁ ଦେଖିଛ ?”

ବୁଢ଼ା ଉତ୍ତର କଲା, “ମୋର ବୟସ କେତେ ହେଲାଣି ମୁଁ କହିପାରିବି ନାହିଁ । ଏବେ କେତେବର୍ଷ ହେଲା ମୋର କିଛି ମନେରହୁନାହିଁ । ପିଲାଦିନ କଥା ସବୁ ଭୁଲିଯାଉଛି । ଆଗେ ପିଲାଦିନେ ମୁଁ ପକ୍ଷୀରାଜ ଘୋଡ଼ା କଥା ସତ ମଣୁ ଥିଲି । ମୁଁ ଏବେ ସେସବୁ କଥା ଭାବେନାହିଁ ।”

ସେତେବେଳକୁ ଯୁବତୀଟି ମାଠିଆରେ ପାଣି ପୂରାଇ ଛିଡ଼ାହୋଇଥିଲେ । ବେଲରଫୋନ୍ ତାଙ୍କୁ ପଚାରିଲେ, “ବୁଢ଼ାଙ୍କର ଆଖିକି ଭଲ ଦିଶୁନଥିବ । ତୁମେ କେବେ ସେ ପକ୍ଷୀରାଜ ଘୋଡ଼ାକୁ ନିଜ ଆଖିରେ ଦେଖିଛ କି ?”

ଯୁବତୀ ଟିକିଏ ହସିଦେଇ କହିଲେ, “ହଁ, ଥରେ ଦେଖିଥିଲାପରି ମନେହେଉଛି । ତେବେ ସେ ପେଗାସସ୍ କି ଗୋଟାଏ ବଡ଼ ଚଢ଼େଇ ଠିକ୍ କରି କହିପାରିବି ନାହିଁ । ଆକାଶରେ ଅନେକ ଉଚ୍ଚରେ ଉଡ଼ୁଥିଲା । ଆଉ ଥରେ ଏଇ ଝରଣାକୂଳରେ ମୁଁ ତାର ବୋବାଇବା ଶୁଣିଛି; ହେଲେ ତାକୁ ଦେଖିନାହିଁ ।”

ଗୋଟିଏ ଶ୍ରେଷ୍ଠ ପିଲା ପାଖରେ ଛିଡ଼ାହୋଇ ଏମାନଙ୍କର କଥାବାର୍ତ୍ତା ଶୁଣୁଥିଲା । ବେଲରଫୋନ୍ ତାକୁ ପଚାରିଲେ, “ତୁମେ କଅଣ କେବେ ପକ୍ଷୀରାଜ ଘୋଡ଼ା ଦେଖିଛ ? ସେ କୁଆଡ଼େ ପାଣି ପିଇବାପାଇଁ ଏଇ ଝରଣା କୂଳକୁ ଆସେ ?”

ପିଲାଟି କହିଉଠିଲା, “ହଁ, ମୁଁ କେତେଥର ଦେଖିଛି । କାଲି ତ ପେଗାସସ୍ ଏଠିକି ଆସିଥିଲା । ମୁଁ ତାକୁ ଦେଖିଥିଲି ।”

ବେଲରଫୋନ୍ ଏଇ ପିଲାଟିଠାରୁ ଖବର ଜାଣିବା ପାଇଁ ତାକୁ ଡାକି ନେଇ ଘାସ ଉପରେ ବସିଲେ । ସେ ପଚାରିଲେ, “ତୁମେ ନିଜ ଆଖିରେ ତାକୁ ଦେଖିଛ ବୋଲି କହୁଛ । ସେ ଦେଖିବାକୁ କିପରି ? ସେ ଏଠାକୁ ଆସି କଅଣ କରେ ? ଯାହା ଜାଣିଛ ସବୁ କହ ।”

ପିଲାଟି କହିଗଲା, “ମୁଁ ପ୍ରାୟ ପ୍ରତିଦିନ ଏଇ ଝରଣା ପାଖକୁ ଆସି ସେଥିରେ କାଗଜ-ଡଙ୍ଗା ଭସାଏ । ଡଙ୍ଗା ଗୁଡ଼ିଲାବେଳକୁ ମୁଁ ପାଣିକି ଚାହେଁ ।

ସେଥିରେ ପକ୍ଷୀରାଜ ଘୋଡ଼ାର ଛାଇ ଦଶେ । ସେ ଆକାଶରେ ଚଢ଼େଇପରି ଉଡ଼ୁଥାଏ । ସେତେବେଳେ ମୋର ମନେହୁଏ, ସେ ମୋତେ ତା ପିଠିରେ ବସାଇ ନେଇଗଲା କି ମୁଁ କେତେ ଦେଶ ଦେଖନ୍ତି । ମୁଁ ଉପରକୁ ଚାହିଁଦେଲାକ୍ଷଣି ସେ ଉଡ଼ିକରି କୁଆଡ଼େ ପଳାଏ, ଆଉ ଦିଶେନାହିଁ ।”

ବେଲାରଫୋନ୍ ପିଲାଟିର କଥାରେ ବିଶ୍ୱାସ କଲେ । ସେ ଝରଣାରେ ପେଗାସସ୍‌ର ଛାଇ ଦେଖିଛି । ଯୁବତୀର କଥାକୁ ମଧ୍ୟ ସେ ସତ ବୋଲି ମନେ କଲେ । ଯୁବତୀ ତାର ରବ ଶୁଣିଛନ୍ତି । ତେବେ ପେଗାସସ୍ ବିଷୟରେ ଯାହା ସବୁ ଶୁଣାଯାଏ, ସେ ସବୁ ମିଛ ହୋଇନପାରେ ।

ବେଲାରଫୋନ୍ ଅନେକ ଦିନ ଯାଏ ସେଇ ଝରଣାକୂଳେ ଜଗିରହିଲେ । ହାତରେ ଲଗାମ ଧରି ଆକାଶକୁ ଚାହିଁଥାନ୍ତି । ଲଗାମରେ ମଣିମୁକ୍ତା ଖଞ୍ଜା ହୋଇ ସୁନ୍ଦର ଦିଶୁଥାଏ । କଳଆରଟା ସୁନାର । କେତେବେଳେ ପେଗାସସ୍‌ର ଦେଖାମିଳିଲେ ଲଗାମ୍ ଲଗାଇ ତା ଉପରେ ବସିଯିବେ ।

ଏଇପରି କେତେଦିନ ଗଲା । ଆଖପାଖର ଲୋକେ ବେଲାରଫୋନ୍‌ଙ୍କର ଏପରି ଚାହିଁ ରହିବା ଦେଖି ଥଟ୍ଟାକରନ୍ତି । ମାତ୍ର ବେଲାରଫୋନ୍ ଲୋକଙ୍କ କଥା ଶୁଣି ନଶୁଣିଲା ପରି ରହନ୍ତି । ସେ ସବୁବେଳେ ଝରଣା କୂଳରେ ବସି ଆକାଶକୁ ଚାହିଁଥାନ୍ତି । ସେ ଶପଥ କରିଥିଲେ, ପକ୍ଷୀରାଜ ଘୋଡ଼ା ପେଗାସସ୍‌କୁ ନ ଦେଖିଲେ ଫେରିବେ ନାହିଁ । ଏଥିର ଏକ କାରଣ ମଧ୍ୟ ଥିଲା । ସେ ଶୁଣିଥିଲେ ପେ ପାଖ ରାଇଜରେ ଗୋଟାଏ ଅସୁର ଅଛି । ସେ ସେଠାରେ ଲୋକଙ୍କ ଉପରେ ଭାରି ଅତ୍ୟାଚାର କରୁଛି । ତାକୁ କେହି ମାରିପାରୁନାହାନ୍ତି । ବେଲାରଫୋନ୍ ତାକୁ ମାରିବାକୁ ମନ କରିଥିଲେ । ତାକୁ ମାରିବାକୁ ହେଲେ ଏହି ପକ୍ଷୀରାଜ ଘୋଡ଼ାର ସାହାଯ୍ୟ ଦରକାର । ତା ବିନା ଅସୁରର ପାଖ ପଶି ହେବନାହିଁ । ଏଇଥିପାଇଁ ବେଲାରଫୋନ୍ ପକ୍ଷୀରାଜ ଘୋଡ଼ାକୁ ଚାହିଁରହିଥିଲେ ।

ସେକାଳରେ କେତେକ ଯୁବକ ଦୁଷ୍ଟ ରାକ୍ଷସ ବା ସେହିପରି ହିଂସ୍ର ଜନ୍ତୁଙ୍କୁ ମାରି ଲୋକଙ୍କର ଉପକାର କରିବାକୁ ବଡ଼ କାମ ବୋଲି ମନେକରୁଥିଲେ । ଏଭଳି ଯୁବକଙ୍କର ପ୍ରଶଂସା ଚାରିଆଡ଼େ ଶୁଣାଯାଉଥିଲା । ବେଲାରଫୋନ୍ ଶୁଣିବାକୁ ପାଇଲେ, ଲିସିଆ ରାଜ୍ୟରେ ଗୋଟାଏ ଦୁଷ୍ଟ ଅସୁର ଅଛି । ଲିସିଆ ରାଜ୍ୟ ତାଙ୍କ ରାଜ୍ୟକୁ ଲାଗିଛି । ଏଇ ଅସୁର ଯୋଗେ ରାଜ୍ୟ ଛାରଖାର ହୋଇ-ଯାଉଥିଲା । ଲୋକେ ତା’ ଭୟରେ ଥରହର ହେଉଥିଲେ । ବେଲାରଫୋନ୍‌ଙ୍କ

ସାହସ ଓ ବଳ କଥା ଶୁଣିପାରି ଲସିଆର ରାଜା ତାଙ୍କୁ କହିଲେ, "ଏ ଅସୁରକୁ ମାରି ମୋର ପ୍ରଜାଙ୍କୁ ରକ୍ଷାକର ।" ଏଇଥିପାଇଁ ବେଲିରଫୋନ୍ ପେଗାସସ୍‌କୁ ପାଇବା ପାଇଁ ଉଦ୍ୟମ କରୁଥିଲେ ।

ଏଇ ଅସୁରଟିର ନାମ ସାଇମେରା । ତା'ଭଳି ହିଂସ୍ର ଜନ୍ତୁ କେଉଁଠି ନଥିବେ । ତାର ବିକଟାଳ ରୂପ ଦେଖିଲେ ଲୋକେ ଡରରେ ଅଚେତ ହୋଇଯିବେ । ସେ ଏଡ଼େ ବେଗରେ ଯାଇପାରେ ଯେ କେହି ତା ସାଥିରେ ଦୌଡ଼ିପାରିବେ ନାହିଁ । ତା ଦେହ ଲୁହାରୁ ବଳି ଟାଣ । ସେଥିରେ କୌଣସି ହତିଆର ଭେଦିପାରେନାହିଁ । ତାର ଲାଞ୍ଜଟି ଗୋଟିଏ ଅଜଗର ସାପଭଳି । କାହାର ସିନା ଗୋଟାଏ ମୁଣ୍ଡ, ଏ ଅସୁରର ତିନୋଟି ମୁଣ୍ଡ । ଗୋଟିଏ ହେଉଛି ସିଂହମୁଣ୍ଡ, ଗୋଟିଏ ଛେଳିମୁଣ୍ଡ ଓ ଆଉଗୋଟିଏ ହେଉଛି ବିଷାକ୍ତ ସାପର ମୁଣ୍ଡ । ସବୁ ମୁଣ୍ଡରୁ ସବୁବେଳେ ଦାଉ ଦାଉ ନିଆଁ ବାହାରୁଥାଏ । ତେଣୁ ତାକୁ ମାରିବାକୁ କେହି ସାହସ କରିପାରୁନଥିଲେ ।

ବେଲିରଫୋନ୍ ଭାରି ବୁଦ୍ଧିଆ । ସେ ଜାଣିଲେ ସାଇମେରାକୁ ମାରିବାକୁ ଗଲେ ଆଗ ଗୋଟିଏ ଘୋଡ଼ା ଦରକାର । ତେବେ ସାଧାରଣ ଘୋଡ଼ା ହେଲେ ଚଳିବ ନାହିଁ—ପକ୍ଷୀରାଜ ପେଗାସସ୍ ଏ କାମପାଇଁ ଦରକାର । ଅନେକେ ଭାବୁଥିଲେ, ପେଗାସସ୍ ବୋଲି କୌଣସି ଘୋଡ଼ା ନାହିଁ । ତା ବିଷୟରେ ଯେତେ କଥା ଶୁଣାଯାଏ, ସେସବୁ ଖାଲି ମନଗଢ଼ା ଗପ । କିନ୍ତୁ ବେଲିରଫୋନ୍‌ଙ୍କର ବିଶ୍ୱାସ ପ୍ରକୃତରେ ପେଗାସସ୍ ଅଛି । ତାକୁ ପାଇପାରିଲେ ସେ ସାଇମେରାକୁ ମାରିପାରିବେ ।

ପେଗାସସ୍‌କୁ ପାଇବାପାଇଁ ସେ ଏତେ ବାଟ ଚାଲି ଲସିଆରୁ ଗ୍ରୀସ୍‌କୁ ଆସିଥିଲେ । ପୁଣି ସେହି ପକ୍ଷୀରାଜ ଘୋଡ଼ାକୁ ଆୟତ୍ତ କରିବାଲାଗି ସୁନ୍ଦର ଲଗାମଟିଏ ଆଣିଥିଲେ । ଏ ଲଗାମର ଅଦ୍ଭୁତ ଶକ୍ତି ଥିଲା । ଥରେ ପକ୍ଷୀରାଜ ଘୋଡ଼ା ଦେହରେ ଲଗାମ ଲାଗିଲେ ସେ ବଶ ହୋଇଯିବ ଓ କଥା ମାନି ଯୁଆଡ଼େ ଯିବାକୁ କହିବ ସେଆଡ଼େ ଯିବ ।

ବେଲିରଫୋନ୍ ଝରଣା କୂଳରେ ବହୁତ ଦିନ ଅପେକ୍ଷା କଲେ, କିନ୍ତୁ ପେଗାସସ୍‌ର ଭେଟ ମିଳିଲା ନାହିଁ । ବେଳେବେଳେ ସେ ଫେରିଯିବେ ବୋଲି ଭାବନ୍ତି । କିନ୍ତୁ ସେ ସାନପିଲାଟି ତାଙ୍କୁ ମନାକରି କହେ, "ମୁଁ ନିଜ ଆଖିରେ

ଦେଖଛୁ, ପେଗାସସ୍ ଏଠିକି ଆସି ପାଣି ପିଏ, ଘାସଉପରେ ଗଡ଼େ । ଦେଖିବ, ଯେଉଁଦିନ ହେଉ ସେ ନିଶ୍ଚୟ ଏଠିକି ଆସିବ ।"

ଦିନେ ପିଲାଟି କହିଲା, "ବେଲରଫୋନ୍, ଆଜି ପେଗାସସ୍ ନିଶ୍ଚୟ ଏଠିକି ଆସିବ । ମୋ ମନଭିତରେ କିଏ କହୁଛି ସେ ଆଜି ଆସିବ ।" ଏହା କହି ପିଲାଟି ଦିନଯାକ ବେଲରଫୋନ୍‌ଙ୍କ ପାଖେ ପାଖେ ରହି ଆକାଶକୁ ଚାହିଁଥାଏ । ସେମାନେ ଝରଣାକୂଳର ଗଛଗୁଡ଼ିକତଳେ ବସିଥାନ୍ତି ।

ହଠାତ୍ ପିଲାଟି ବେଲରଫୋନ୍‌ଙ୍କ ଦେହରେ ହାତମାରି ଚୁପ୍ ଚୁପ୍ କରି କହିଲା, "ଏଇ ଝରଣାର ପାଣିକି ଚାହଁ ।" ବେଲରଫୋନ୍ ଝରଣାର ନିର୍ମଳ ପାଣିକି ଚାହିଁ ଗୋଟାଏ ଛାଇ ଦେଖିପାରିଲେ । ସେ ଭାବିଲେ, ଏଟା ବୋଧେ ଗୋଟାଏ ପକ୍ଷୀର ଛାଇ ହେବ । ପକ୍ଷୀଟା ଆକାଶରେ ଖୁବ୍ ଉଚ୍ଚରେ ଉଡ଼ୁଛି ଓ ତାର ଡେଣା ଉପରେ ସୂର୍ଯ୍ୟକିରଣ ପଡ଼ୁଥିବାରୁ ଚକ୍ ଚକ୍ କରୁଛି ।

ପିଲାଟି ପୁଣି କହିଲା, "ଭଲକରି ଦେଖ । ମୁଁ ଦେଖିପାରିଲିଣି । ଏହା ଚଢ଼େଇର ଛାଇ ନୁହେଁ, ପେଗାସସ୍‌ର ଛାଇ ।"

ବେଲରଫୋନ୍‌ଙ୍କ ଛାତି ଦମ୍ ଦମ୍ ପଡ଼ିଲା । ସତେ କଅଣ ସେ ମାସ ମାସ ଧରି ଯେଉଁ ପକ୍ଷୀରାଜ ଘୋଡ଼ାକୁ ଚାହିଁ ବସିଥିଲେ, ସେଇ ତାଙ୍କ ପାଖକୁ ଉଡ଼ି ଆସୁଛି ? ସେ ପିଲାଟିକୁ କୋଳରେ ଟେକିନେଇ ଗଛ ଉହାଡ଼ରେ ଲୁଚିଗଲେ । ପେଗାସସ୍ ସେମାନଙ୍କୁ ଦେଖିଲେ ସେଠାରେ ନ ଓହ୍ଲାଇ ଚାଲିଯିବ—ଏହି ଭୟରେ ସେମାନେ ଲୁଚିରହି ପକ୍ଷୀରାଜକୁ ଅନାଇଁଲେ । ଆକାଶରେ ଉଡ଼ିଲା ବେଳେ ତାର ଧଳା ଡେଣା ଉପରେ ସୂର୍ଯ୍ୟକିରଣ ପଡ଼ିବାରୁ ତାହା ଚକ୍ ଚକ୍ ଦିଶୁଥିଲା । ଘୋଡ଼ାଟିର ସର୍ବାଙ୍ଗ ଧଳା ଓ ଅତି ସୁନ୍ଦର ।

ପେଗାସସ୍ କ୍ରମେ ତଳକୁ ତଳକୁ ଖସିଲା । ତାର ଡେଣା ଦୁଇଟି ପ୍ରସାରିତ ରହିଥାଏ । ଶେଷରେ ତାର ଗୋଡ଼ ଘାସକୁ ଛୁଇଁଲା । ସେତେବେଳେ ତାର ଡେଣା ବନ୍ଦହୋଇଗଲା ।

ଝରଣା କୂଳକୁ ଯାଇ ସେ ମୁଣ୍ଡ ନୁଆଇଁ ପାଣି ପିଇଲା । ଥରେ ପିଇସାରି ଟିକିଏ ବିଶ୍ରାମ ନେଉଥାଏ, ପୁଣି ମୁଣ୍ଡ ନୁଆଇଁ ପିଉଥାଏ । ଏହିପରି କେତେଥର ପିଇବାପରେ ମନରେ ସନ୍ତୋଷ ଆସିଲାପରି ବୋଧହେଲା । ପାଣି ପିଇବା ପରେ ସେ ଝରଣାକୂଳରେ ଥିବା ଘାସ ଓ ଲତାରୁ କିଛି ଖାଇ ଟିକିଏ

ଏପାଖ ସେପାଖ ଦୌଡ଼ିଲା । ସେ ଆକାଶରେ ଉଡ଼ୁଥିଲେହେଁ ଭୂଇଁଉପରେ ଦୌଡ଼ିବାରେ ମଧ୍ୟ ତାର ଆନନ୍ଦ ଆସୁଥିଲା । ବେଳେବେଳେ ସେ ଭୂଇଁଠାରୁ



ଅଳ୍ପ ଦୂର ଉପରକୁ ଯାଇ ପୁଣି ଫେରିଆସୁଥିଲା । ବେଲରଫୋନ୍ ଓ ପିଲାଟି ଦୁହେଁଯାକ ପକ୍ଷୀରାଜ ଘୋଡ଼ାର ଖେଳ କୌତୁକ ଦେଖୁଥାନ୍ତି । ବେଲରଫୋନ୍

ମନେକରୁଥାନ୍ତି, ଏପରି ସୁନ୍ଦର ଘୋଡ଼ା ଉପରେ ଲଗାମ୍ ଲଗାଇ ତାର ସ୍ୱାଧୀନତାରେ ବାଧାଦେବା ଏକ ପାପ କାର୍ଯ୍ୟ ହେବ ।

କିଛି ସମୟ ପରେ ପେଗାସସ୍ ତାର ଡେଣା ଦୁଇଟିକୁ ଯାକଦେଇ ଘାସ ଉପରେ କେତେଥର ଗଡ଼ିଗଲା । ବେଳେବେଳେ ସେ ଗୋଡ଼ ଚାରିଟା ଉପରକୁ ଟେକି ଦେଉଥାଏ । ବେଲାରଫୋନ୍ ଚୁପ୍‌ହୋଇ ଘୋଡ଼ାର ଏହି କୌତୁକ ଦେଖୁଥାନ୍ତି । ଘୋଡ଼ା ଆଗଗୋଡ଼ ଦୁଇଟା ତଳକୁ ଆଣି ପୁଣି ଠିଆହେବାର ଉଦ୍ୟମ କଲା । ବେଲାରଫୋନ୍ ଦେଖିଲେ ପେଗାସସ୍ ଫେରିଯିବାକୁ ବସିଲାଣି, ଆଉ ଡେରିକଲେ ଚଳିବ ନାହିଁ । ସେ ହଠାତ୍ ଦଉଡ଼ିଯାଇ ପକ୍ଷୀରାଜର ପିଠି ଉପରେ ବସିଗଲେ । ପେଗାସସ୍ କେବେ କାହାରିକୁ ପିଠିରେ ବସାଇ ନଥିଲା, ତେଣୁ ସେ ଡେଇଁପଡ଼ିଲା । ସେହି ଝଟ୍‌କାରେ ସେ ପାଞ୍ଚଶହ ଫୁଟ ଉଚ୍ଚକୁ ଉଠିଗଲା । ଘୋଡ଼ା ଭୂଇଁକୁ ଖସିପଡ଼ିବା ସଙ୍ଗେ ସେ ମଧ୍ୟ ଖସିପଡ଼ିଲେ, ମାତ୍ର ସେ ଘୋଡ଼ା ପିଠିରୁ ଆଦୌ ଓହ୍ଲାଇଲେ ନାହିଁ । ତାଙ୍କୁ ଫିଙ୍ଗିଦେବା ପାଇଁ ଘୋଡ଼ା ଯେତେ ଚେଷ୍ଟାକଲେ ମଧ୍ୟ ପାରିଲା ନାହିଁ ।

ପେଗାସସ୍ ବେଲାରଫୋନ୍‌ଙ୍କୁ କାମୁଡ଼ିବାକୁ ବସିଲା, ପଛ ଗୋଡ଼ରେ ଲାତମାରିଲା, କିନ୍ତୁ କାହିଁରେ କିଛି ହେଲାନାହିଁ । ତାଙ୍କଭଳି ଘୋଡ଼ାସବାରକୁ ଫିଙ୍ଗିଦେବା କଅଣ ସହଜ ? ବେଳଉଣ୍ଡି ବେଲାରଫୋନ୍ ତା ଦେହରେ ଲଗାମ ଲଗାଇଦେଲେ । ଏବେ ପକ୍ଷୀରାଜ ଯାଏ କୁଆଡ଼େ ? ସେ ବହୁଦିନର ପୋଷା ଘୋଡ଼ାପରି ଚୁପ୍‌ହୋଇ ଠିଆରହିଲା । ଏପରି ବଳବାନ୍ ଜନ୍ତୁର ସ୍ୱଭାବ ମୁହୂର୍ତ୍ତକେ ବଦଳିଗଲା । ସେ ଧୀରହୋଇ ବେଲାରଫୋନ୍‌ଙ୍କୁ ଅନାଇଲା । ତା ଆଖିରୁ ଲୁହଗଡ଼ିଯାଉଥାଏ । ତାର ଏହି ବାଧ୍ୟତା ଦେଖି ବେଲାରଫୋନ୍‌ଙ୍କ ମନରେ ଟିକିଏ କଷ୍ଟ ହେଲା । ସେ ଘୋଡ଼ାଟିକୁ ଆଉଁସିଦେଇ ଆଦରକଲେ । ମନେହେଲା ପକ୍ଷୀରାଜର ମନ ଆନନ୍ଦିତ ହେଲା ।

ଏଥିମଧ୍ୟରେ ସେମାନେ ଅନେକଦୂର ଚାଲିଯାଇଥିଲେ । ହେଲିକନ ପର୍ବତ ଉପରେ ହେଲାକ୍ଷଣି ପେଗାସସ୍ ତା ଉପରେ ଓହ୍ଲାଇଲା । ଏଇ ପର୍ବତ ହେଉଛି ତାର ରହିବା ଜାଗା । ବେଲାରଫୋନ୍ ଘୋଡ଼ା ପିଠିରୁ ତଳକୁ ଓହ୍ଲାଇ ପଡ଼ିଲେ । ପେଗାସସ୍ ଆଜଯାଏଁ ତା ମନଇଚ୍ଛା ବୁଲୁଥିଲା, କେହି ତାକୁ କିଛି କହିବାକୁ ନଥିଲା । ଏବେ ତା ଇଚ୍ଛା ବିରୁଦ୍ଧରେ କିଛି କରାଇବା ଅନ୍ୟାୟ ବୋଲି ବେଲାରଫୋନ୍ ବିଚାରକଲେ । ସେ ଘୋଡ଼ାର ଲଗାମ କାଢ଼ିନେଇ

କହିଲେ, "ପେଗାସସ୍, ମୁଁ ତୋତେ ଲଗାମ ଦେଇ ଅନ୍ୟାୟ କରିଛି । ସ୍ୱାଧୀନ ରହିବାକୁ କିଏ ନ ଚାହେଁ ? ନିଜ କାମପାଇଁ ମୁଁ ତୋର ସ୍ୱାଧୀନତା ହରଣ କରିବି କାହିଁକି ? ତୁ ମୋତେ ଛାଡ଼ି ଯୁଆଡ଼େ ଇଚ୍ଛା ଯାଇପାରୁ । ମାତ୍ର ଯେବେ ତୋର ମୋ ପ୍ରତି ସ୍ନେହ ଥାଏ, ତୁ ମୋ ପାଖେ ପାଖେ ରହ । ମୁଁ ତୋର ପ୍ରଭୁ ହେବାକୁ ଚାହେଁନାହିଁ । ତୁ ଇଚ୍ଛାକଲେ ଆମେ ବନ୍ଧୁହୋଇ ରହିବା ।"

ପେଗାସସ୍ ତା' ମୁହଁକୁ ନେଇ ବେଲରଫୋନ୍‌ଙ୍କ ମୁହଁରେ ଘଷିଲା । ବେଲରଫୋନ୍ ମଧ୍ୟ ତା' ବେକର କେଶରଗୁଡ଼ିକୁ ଆଦରରେ ଆଉଁସିଦେଲେ । ଜଣାଗଲା, ସେ ଯେପରି କହିବାକୁ ଚାହେଁ—ମୁଁ ତୁମ ପାଖେ ପାଖେ ରହିବି । ଆମେ ବନ୍ଧୁଭଳି ରହିବା । ବିପଦବେଳେ ପରସ୍ପରକୁ ସାହାଯ୍ୟ କରିବା । ତୁମେ ଯାହା କହିବ ମୁଁ ପ୍ରାଣପଣେ ତା କରିବି ।

ଠିକ ପରେ ପେଗାସସ୍ ତାର ଡେଣା ମେଲାଇ ଉପରକୁ ଉଠିଲା । ସୂର୍ଯ୍ୟ ଅସ୍ତହୋଇଯାଉଥିଲେ । ସୂର୍ଯ୍ୟଙ୍କର ସୁନେଲି କିରଣରେ ତାର ଡେଣା ଝଟଝଟ ଦିଶୁଥାଏ । ସେ ଏତେ ଉପରକୁ ଉଡ଼ିଗଲା ଯେ କିଛି ସମୟ ପରେ ମୋଟେ ଦେଖାଗଲା ନାହିଁ । ବେଲରଫୋନ୍ ଭାବିଲେ—ପୋଗାସସ୍ ତାଙ୍କୁ ଭଲପାଏ ନାହିଁ—ସେଥିପାଇଁ ସେ ତାଙ୍କୁ ଛାଡ଼ି ଚାଲିଗଲା—ଆଉ ଫେରିଆସିବ ନାହିଁ । ଏହା ଭାବିଲାକ୍ଷଣି ତାଙ୍କ ମନରେ କଷ୍ଟ ହେଲା । ପେଗାସସ୍ ସାହାଯ୍ୟ ନକଲେ ସେ ରାକ୍ଷସକୁ ମାରିବେ କିପରି ?

କିଛି ସମୟ ଗଲା । ସେତେବେଳକୁ ସୂର୍ଯ୍ୟ ବୁଡ଼ିଗଲେଣି । ଏହି ସମୟରେ ବେଲରଫୋନ୍ ଦେଖିଲେ ଯେ ପକ୍ଷୀରାଜ ଫେରିଆସୁଛି । ତାଙ୍କ ମନରେ ଭରି ଆନନ୍ଦ । ତେବେ ପେଗାସସ୍ ତାଙ୍କୁ ଛାଡ଼ି ଯିବାକୁ ଇଚ୍ଛା କରେ ନାହିଁ । ସେ ତଳକୁ ଆସିଲାମାତ୍ରେ ବେଲରଫୋନ୍ ତା ଦେହ ଆଉଁସିଦେଲେ, ତା ବେକକୁ କୁଣ୍ଢାଇ କେତେବେଳଯାଏଁ ଆଦରକଲେ । ପେଗାସସ୍ ଧୀର ସ୍ୱରରେ ବୋବାଇ ଜଣାଇଦେଲା, "ମୁଁ ତୁମ ପାଖେ ପାଖେ ରହି ତୁମର ସେବାକରିବି ।"

ରାତିରେ ଦୁହେଁଯାକ ସେହି ପାହାଡ଼ ଉପରେ ରହିଲେ । ସକାଳ ହେଲା । ଦୁହେଁ ଉଠିଲେ । ପେଗାସସ୍ ଛିଡ଼ାହୋଇ ବେଲରଫୋନ୍‌ଙ୍କ ଦେହରେ ଘଷିହେଲା । ସେ ବୁଝିପାରିଲେ, ପକ୍ଷୀରାଜ ତାଙ୍କୁ ବୁଲିଯିବାକୁ ଡାକୁଛି । ସେ ଘୋଡ଼ା ପିଠିରେ ବସି ଆକାଶକୁ ଉଠିଲେ । କେତେଆଡ଼େ ବୁଲି କେତେ ଗାଆଁ, ସହର, ବଣ, ପର୍ବତ, ନଈ ଦେଖିଲେ । ପରେ ପେଗାସସ୍ ପୁଣି

ହେଲିକନ୍ ପର୍ବତ ଉପରେ ଓହ୍ଲାଇଲା । ପେଗାସସ୍ ଏହାପରେ ପ୍ରତିଦିନ ବେଲରଫୋନ୍‌ଙ୍କୁ ପିଠିରେ ବସାଇ ନାନାଆଡ଼େ ବୁଲାଇଆଣେ । ଏତେ ବାଟ ଉଡ଼ିଲେ ମଧ୍ୟ ସେ କେବେ କ୍ଲାନ୍ତ ହୁଏ ନାହିଁ ।

ଏହାପରେ ଆନନ୍ଦରେ କେତେଦିନ କଟିଗଲା । ବେଲରଫୋନ୍‌ଙ୍କର ମନେପଡ଼ିଲା ଅସୁର ସାଇମେରା କଥା । ତାକୁ ମାରିବାକୁ ସେ ପ୍ରତିଜ୍ଞା କରି ବାହାରିଥିଲେ । ଆଉ ବିଳମ୍ବ କଲେ ଚଳିବ ନାହିଁ । ଦିନେ ରାତିରେ ଦୁହେଁଯାକ ଗୋଟିଏ ଝରଣା କୂଳରେ ଶୋଇଲେ । ସକାଳ ହେବାରୁ ଦୁହେଁ ଉଠି ଝରଣାର ମଧୁର ଜଳରୁ ପେଟ ପୂରିକରି ପିଇଲେ । ପେଗାସସ୍ ଅନ୍ୟଦିନ ପରି ବେକଟି ଲମ୍ବାଇଦେବାରୁ ବେଲରଫୋନ୍ ତା ଦେହରେ ଲଗାମ ଲଗାଇ ଦେଲେ । ସେ ବେକରେ ଢାଲ ଓହଳାଇଦେଇ ଖଣ୍ଡାଧରି ପକ୍ଷୀରାଜ ଉପରେ ବସିଲେ । ହୁହୁଁ ହୁହୁଁ ପୃଥିବୀର ବହୁତ ଉଚ୍ଚକୁ ପକ୍ଷୀରାଜ ଉଠିଗଲା । ସେଠାରୁ ପୃଥିବୀ ଉପର ସପା ଦିଶୁଥାଏ । ବେଲରଫୋନ୍ ଘୋଡ଼ାକୁ ପୂର୍ବଦିଗକୁ ଚଳାଇଲେ । କିଛି ସମୟ ପରେ ଲିସିଆ ରାଜ୍ୟର ପାହାଡ଼ ପର୍ବତ, ନଦୀ ଉପତ୍ୟକା ସବୁ ପରିଷ୍କାର ରୂପେ ଦେଖାଗଲା । ଦୁହେଁ ମେଘ ଆଢୁଆଳରେ ରହି ସାଇମେରାର ସନ୍ଧାନ ନେଲେ । ଟିକିଏ ଦୂରରେ ଗୁଡ଼ାଏ ଘରର କାନ୍ଥ ଛୁଡ଼ାହୋଇଛି, ଚାଳନାହିଁ, ପାଖରେ ପାଉଁଶ ଜମାହୋଇଛି । କେତେ ଗଦା ହାଡ଼ ଦିଶୁଛି । ଜନପ୍ରାଣୀର ଦେଖାନାହିଁ । ବେଲରଫୋନ୍ ଅନୁମାନ କରି-ନେଲେ, ଏ ସବୁ ସାଇମେରାର କାମ । ସେ ଯେଉଁ ମଣିଷ, ଗୋରୁ, ମଇଁଷି ଆଦି ଖାଇଛି, ଏଗୁଡ଼ାକ ସେଇମାନଙ୍କ ହାଡ଼ । ତାର ମୁହଁରୁ ନିଆଁ ବାହାରି ଗାଆଁଗଣ୍ଡା ସବୁ ପୋଡ଼ିଦେଇଛି । ତେବେ ସାଇମେରା ରହିବାର ଗୁହା ଏହାରି ପାଖରେ କେଉଁଠି ହୋଇଥିବ । ଇସାବି ଚାଇ ପେଗାସସ୍ ତଳକୁ ଖସିଆସି ଭୂଇଁଠାରୁ ଅଳ୍ପ ଉଚ୍ଚରେ ରହିଲା । ସେ ପାହାଡ଼ ଧାରରେ ଗୋଟିଏ ଗୁହା ଭିତରକୁ ଅନାଇଁ ଦେଖିଲେ । ତାଙ୍କ ଅନୁମାନ ସତ୍ୟ । ଅସୁର ନିଃଶ୍ୱାସ ନେଲାବେଳେ ସିଂହ, ଛେଳି ଓ ସାପ ତାର ଏ ତିନି ମୁଣ୍ଡରୁ ଦମକାଏ ଲେଖାଏଁ ନିଆଁ ବାହାରୁଛି । ପେଗାସସ୍ ମଧ୍ୟ ସବୁ ଦେଖିପାରିଲା । ସେ ଯୁଦ୍ଧ ପାଇଁ ପ୍ରସ୍ତୁତ ରହି ଭାବିବାକୁ ଲାଗିଲା ।

ଘୋଡ଼ାର ରାବ ଶୁଣି ତିନିଟାଯାକ ମୁଣ୍ଡ ଆହୁରି ଜୋର୍‌ରେ ନିଆଁ ବାହାର କଲେ । ଅସୁରଟା ଗୁହା ଭିତରୁ ବାହାରିପଡ଼ିଲା । ତାର ଭୟଙ୍କର ନଖ, ମୁଣ୍ଡ

ଓ ତାର ମୁହଁରୁ ବାହାରୁଥିବା ନିଆଁ ଏସବୁ ଦେଖିଲେ ରକ୍ତ ପାଣିଫାଟିଯିବ । ସେ ଘୋଡ଼ାକୁ ମାଡ଼ିବସିବ ବୋଲି ଡେଇଁ ପଡ଼ିଲା, କିନ୍ତୁ ପେଗାସସ୍ ଯେମିତି ଚଞ୍ଚଳ ସେମିତି ସାହସୀ । ସେ ହଠାତ୍ ଉପରକୁ ଉଠିଗଲା—ଅସୁର ଧରିପାରିଲା ନାହିଁ । ବେଲରଫୋନ୍ ଖଣ୍ଡା ବାହାରକଲେ । ଚୁପ୍ ଚୁପ୍ କରି ପେଗାସସର



କାନରେ କହିଲେ, "ତୁ ମୋର ବନ୍ଧୁ । ମୁଁ ଏ ଅସୁରକୁ ମାରିବାକୁ ଆସିଛି । ତୁ ମୋତେ ସାହାଯ୍ୟ କର । ମୁଁ ଯଦି ଅସୁରକୁ ମାରିନପାରେ ତେବେ ମୁଁ ମରିଯିବି ପଛେ, ପଛଘୁଞ୍ଚା ଦେଇ ଫେରିବିନାହିଁ । ବରଂ ଅସୁର ହାତରେ ମୋର ପ୍ରାଣ ଯିବ ।" ପେଗାସସ୍ ସତେ ଅବା ବେଲରଫୋନ୍‌ଙ୍କ କଥା

ବୁଝିପାରିଲା । ସେ ଧୀରଭାବରେ ନିଜର ନାକଟିକୁ ବେଲାରଫୋନଙ୍କ ମୁହଁପାଖେ ଘଷିଦେଇ ଜଣାଇଦେଲା—ଚିନ୍ତା ନାହିଁ, ମୁଁ ସାହାଯ୍ୟ କରିବି । ତୁମେ ଯାହା କରିବାକୁ କହିବ ତା କରିବାକୁ ପ୍ରସ୍ତୁତ ଅଛି ।

ପେଗାସସ୍ ହଠାତ୍ ଖରବେଗରେ ତଳକୁ ଖସିଆସି ଅସୁରକୁ ଆକ୍ରମଣ କଲା । ବେଲାରଫୋନ୍ ମୁହୂର୍ତ୍ତକ ଭିତରେ ଖଣ୍ଡା ଚଳାଇ ଅସୁରର ଛେଳି ମୁଣ୍ଡଟା କାଟିପକାଇଲେ । ପେଗାସସ୍ ପଛକୁ ଘୁଞ୍ଚିଆସିଲା । ଅସୁର ଆଗଅପେକ୍ଷା ଆହୁରି ଜୋର୍‌ରେ ତାର ଅନ୍ୟ ଦୁଇ ମୁଣ୍ଡରୁ ହାବୁକା ହାବୁକା ନିଆଁ ଛାଡିଲା । ସିଂହର ଗର୍ଜନ ଓ ସାପର ସୁଉ ସୁଉ ଶବ୍ଦରେ ସେ ଅଞ୍ଚଳଯାକ କମ୍ପିଗଲା ।

ବେଲାରଫୋନ୍ ଚୁପ୍‌କରି ପକ୍ଷୀରାଜ ଘୋଡ଼ାର କାନପାଖେ କହିଲେ, "ସାବାସ୍ ପେଗାସସ୍ ! ଆଉଥରେ ଚାଲ । ଯେପରି ଆଉ ଗୋଟାଏ ଚୋଟରେ ବାକି ଦୁଇଟିଯାକ ମୁଣ୍ଡ ଛିଡ଼ିଯିବ ।" ବେଲାରଫୋନ୍ ଲଗାମକୁ ଧରି ହଲାଇ ଦେଲାମାତ୍ରେ ପେଗାସସ୍ ଆଗଭଳି ଆଉଥରେ ତଳକୁ ଝାମ୍ପଦେଲା । ଦୁଇ ମୁଣ୍ଡକୁ ଲକ୍ଷକରି ବେଲାରଫୋନ୍ ଖଣ୍ଡାରେ ଚୋଟ ବସାଇଲେ । ଏଥର ପେଗାସସ୍‌କୁ ବିପଦ ଘଟିଲା । ଅସୁର ଦେହରେ ଚୋଟ ବାଜିବା ସଙ୍ଗେ ସଙ୍ଗେ ପେଗାସସ୍ ଫେରିପଡ଼ିଲା, ମାତ୍ର ସେଇ ମୁହୂର୍ତ୍ତକ ଭିତରେ ରାକ୍ଷସ ପକ୍ଷୀରାଜର ବାଆଁ ଡେଣାରେ ତା ନଖ ବସାଇଦେଲା । ଏହା ଫଳରେ ତାର ସେପାଖ ଡେଣାଟି ଜଖମ ହୋଇଗଲା । ବେଲାରଫୋନ୍ ଦେଖିଲେ ଏଥର ସେ ସିଂହ ମୁଣ୍ଡଟା କାଟିଦେଇଛନ୍ତି, ମାତ୍ର ସାପ ମୁଣ୍ଡଟା ଆଗପରି ରହିଛି । ଗୋଟାଏ ମୁଣ୍ଡ ହେଲେ କ'ଣ ହେବ, ସେଥିରୁ ତିନିଗୁଣ ଜୋର୍‌ରେ ନିଆଁ ଝଲକ ବାହାରୁଛି । ସେ ନିଆଁ ତାତିରେ ଆଖି ପଶିହେଉନାହିଁ । ସେଇ ମୁଣ୍ଡର ଗର୍ଜନରେ ପୃଥିବୀ କମ୍ପିଯାଉଛି । ସେ ଶବ୍ଦ ଘଡ଼ଘଡ଼ିକୁ ବଳିଯାଉଛି ।

ଲିସିଆର ରାଜାଙ୍କ ନଅର ସେଠାରୁ ପଚିଶ ମାଇଲ ଦୂର । ରାଜା ନିଜ ନଅରରେ ବସି ଗୋଟାଏ ଭୟଙ୍କର ସୁ ସୁ ଶବ୍ଦ ଶୁଣିଲେ । ମଝିରେ ମଝିରେ ଘଡ଼ଘଡ଼ି ଭଳି ଶବ୍ଦ ମଧ୍ୟ ଶୁଭୁଥାଏ । ପ୍ରଥମେ ସେ ଏହାକୁ ଘଡ଼ଘଡ଼ିର ଶବ୍ଦ ବୋଲି ମନେକରିଥିଲେ, କିନ୍ତୁ ଆକାଶରେ ଅଳ୍ପେ ମେଘ ନ ଥିଲା—ତେବେ ଘଡ଼ଘଡ଼ି ଆସିବ କାହୁଁ ? ପରେ ସେ ଜାଣିପାରିଲେ ଅସୁରର ଗର୍ଜନ ହେତୁ ଏପରି ଶବ୍ଦ ଶୁଣାଯାଉଛି । ସେ ଭୟରେ ଥରଉଠିଲେ ।

ଏଣେ ପେଗାସସ୍‌ର ବାଆଁ ଡେଣାରେ ଆଘାତ ଲଗିଥିବାରୁ ସେ ଆକାଶରେ ଟିକିଏ ରହିଗଲା । ରାଗରେ ସେ ଭାବିଲା । ଯେପରି ହେଉ ଅସୁରକୁ ମାରିବ ବୋଲି ସେ ପ୍ରତିଜ୍ଞା କଲା । ବେଲରଫୋନ୍ ପକ୍ଷୀରାଜ ଘୋଡ଼ାର କଷ୍ଟ ବୁଝିପାରି କହିଲେ, "ତୋର କଷ୍ଟ ଦେଖି ମୋ ମନରେ ଦୁଃଖହେଉଛି । ପ୍ରତିଶୋଧ ନ ନେଇ ମୁଁ ଛାଡ଼ିବି ନାହିଁ । ଆଉ ଯେଉଁ ଗୋଟାଏ ମୁଣ୍ଡ ଅଛି ସେଇଟାକୁ କାଟି ଅସୁରକୁ ମାରିଲେ ମୋ ମନରେ ଶାନ୍ତି ଆସିବ । ସାଇମେରା ନିଶ୍ଚୟ ତା କର୍ମର ଫଳ ଭୋଗିବ ।"

ବେଲରଫୋନ୍ ପୁଣିଥରେ ଲଗାମକୁ ଟିକିଏ ଟାଣିଦେଇ ଚିତ୍କାରକଲେ । ପେଗାସସ୍ ସିଧା ଲମ୍ଫଦେଇ ଅସୁର ମୁହଁ ପାଖରେ ପହଞ୍ଚିଗଲା । ଏଥର ରାକ୍ଷସର ମୁହଁରେ ନିଆଁ ଏତେ ପ୍ରବଳ ଥିଲା ଯେ ସେଥିରେ ଦୁହେଁ ପୋଡ଼ିଯିବାର ଭୟ ଥିଲା । ଭାଗ୍ୟକୁ ସେମାନଙ୍କର ପ୍ରାଣ ରହିଗଲା । ମାତ୍ର ନିଆଁର ତାତିରେ ବେଲରଫୋନ୍‌ଙ୍କ ମୁଣ୍ଡରୁ ଫାଳେ ଛାତିଗଲା, ପେଗାସସ୍‌ର ଗୋଟାଏ ଡେଣାରୁ କେତେକ ଅଂଶ ପୋଡ଼ିଗଲା ।

ସାଇମେରା ନିଜ ଜୀବନ ରକ୍ଷାପାଇଁ ଶେଷ ଚେଷ୍ଟାକଲା । ସେ ଡେଇଁପଡ଼ି ପେଗାସସ୍ ଦେହରେ ଲଗିରହିଲା । ସଙ୍ଗେ ସଙ୍ଗେ ତା' ଲାଞ୍ଜରେ ତାକୁ ଛନ୍ଦିବାକୁ ଚେଷ୍ଟାକଲା । ବେଲରଫୋନ୍ ଢାଲ ଟେକି ଧରିବାରୁ ସାପମୁଣ୍ଡର ନିଆଁ ସେମାନଙ୍କ ଦେହରେ ବାଜିପାରିଲା ନାହିଁ । ପେଗାସସ୍ ଅତି ବେଗରେ ଉପରକୁ ଉଠିଲା । ତାର ପିଠିଉପରେ ବେଲରଫୋନ ଓ ଦେହକୁ ଧରି ଓହଳିଥାଏ ସାଇମେରା । ବେଲରଫୋନ୍ ଦେଖିଲେ ଯେ ଅସୁରର ଗଳାରେ କିଛି ଆବରଣ ନାହିଁ । ସେ ସୁବିଧା ଉଣ୍ଡି ଖଣ୍ଡାଟିକୁ ସେହି ଗଳାରେ ଭୁଷିଦେଲେ । ଅଳ୍ପ ସମୟ ଭିତରେ ଅସୁରର ପ୍ରାଣ ଛାଡ଼ିଗଲା । ସେ ଆକାଶରୁ ଭୂଇଁଉପରେ ଖସିପଡ଼ିଲା । ସେତେବେଳେ ଗୋଟାଏ ପ୍ରଚଣ୍ଡ ଶବ୍ଦ ବହୁ ଦୂର ଯାଏ ଶୁଣାଗଲା । ଭୂଇଁରେ ପଡ଼ିଲା ପରେ ତା ପେଟର ନିଆଁରେ ସେ ନିଜେ ପୋଡ଼ିହୋଇ ପାଉଁଶ ହୋଇଗଲା ।

ସାଇମେରାକୁ ମାରି ବେଲରଫୋନ୍ ପକ୍ଷୀରାଜ ଘୋଡ଼ାର ବେକକୁ ଆଉଁସି ଦେଲେ । ତାକୁ ଚୁମା ଦେଇ ନିଜର କୃତଜ୍ଞତା ଜଣାଇଲେ । ପେଗାସସ୍ ମଧ୍ୟ ଧୀର ରାବ କରି ନିଜର ଆନନ୍ଦ ପ୍ରକାଶ କଲା । ଏବେ ନିଜ ଦେଶକୁ ଫେରିବା କଥା । ବେଲରଫୋନ୍ ଘୋଡ଼ାକାନ ପାଖରେ କହିଲେ, "ଗ୍ଲୁଳ,

ଆଗେ ପିରନ୍ ଝରଣା ପାଖକୁ ଯିବା ।" ପେଗାସସ୍ ବେଲାରଫୋନ୍‌ଙ୍କୁ ପିଠିରେ ବସାଇ ପିରନ୍ ନଦୀକୂଳରେ ପହଞ୍ଚିଲା । ପିରନ୍‌ର ମଧୁର ଜଳ ପିଇ ସେ ଦୁହେଁ ତୃପ୍ତି ଲାଭକଲେ ।

ଏହି ସମୟରେ ସେଦିନର ସେହି ପିଲାଟି ଦଉଡ଼ିଆସି ବେଲାରଫୋନ୍‌ଙ୍କୁ କହିଲା, "ତୁମେ ସାଇମେରାକୁ ମାରି ଆସିଲ । ମୁଁ ଜାଣେ ପରା ତୁମେ ତାକୁ ନ ମାରି ଫେରିବନାହିଁ ।" ବେଲରଫୋନ୍ ପିଲାଟିକୁ ଆଦରରେ କୋଳକୁ ନେଇ କହିଲେ, "ହଁରେ ବାବୁ, ତୋର ଯୋଗେ ମୁଁ ସାଇମେରାକୁ ମାରିପାରିଛି । ତୋର କଥାରେ ମୁଁ ବିଶ୍ୱାସ କରି ଏତେଦିନ ରହିଁ ବସିବାରୁ ଯିନା ପକ୍ଷୀରାଜ ଘୋଡ଼ାକୁ ପାଇଲି—ପୃଥିବୀ ଉପରେ ଉଡ଼ି ଉଡ଼ି କେତେ ରାଜ୍ୟ ଦେଖିଲି—ଶେଷରେ ସାଇମେରାକୁ ମାରିଲି । ତୋର ଏ ସାହାଯ୍ୟ ଜୀବନରେ ଭୁଲିପାରିବି ନାହିଁ ।"

ପେଗାସସ୍ ପାଣି ପିଇ ଝରଣାକୂଳରେ ବୁଲୁଥିଲା । ବେଲାରଫୋନ୍ ତା ପାଖକୁ ଯାଇ ତାର ଲଗାମ ଫିଟାଇଦେଇ କହିଲେ, "ପେଗାସସ, ଏଣିକି ତୁ ତୋର ହେଲିକନ ପର୍ବତକୁ ଫେରିଯାଇ ଆନନ୍ଦରେ ରହ । ମୁଁ ତୋତେ ରଖି ମୋ କାମରେ ଲଗାଇଥିଲି ବୋଲି ମନରେ ଦୁଃଖ କରିବୁନାହିଁ । ଏଣିକି ତୁ ସ୍ୱାଧୀନ । ଜୀବନ ଥିବାଯାଏ ମୁଁ ତୋ କଥା ଭୁଲିପାରିବିନାହିଁ ।"

କିନ୍ତୁ ପେଗାସସ୍ ପଳାଇଗଲା ନାହିଁ । ସେ ତାର ମୁହଁଟି ବେଲରଫୋନ୍‌ଙ୍କ କାନ୍ଧ ଉପରେ ରଖିଦେଲା ଓ ତାଙ୍କୁ ଛାଡ଼ିଯିବାକୁ ଚାହେଁ ନାହିଁ ବୋଲି ଜଣାଇ ଦେଲା । ବେଲାରଫୋନ୍ ପେଗାସସ୍‌ର ମନକଥା ବୁଝିପାରି କହିଲେ, "ହଉ, ଯେତେଦିନ ଇଚ୍ଛା ସେତେଦିନ ତୁ ମୋ ପାଖରେ ଥିବୁ । ଚାଲ ଆଗେ ଲିସିଆକୁ, ରାଜାଙ୍କୁ ଜଣାଇଦେବା ସାଇମେରା ମରିଛି ବୋଲି ।" ପିଲାଟିଠାରୁ ବିଦାୟ ନେଲାବେଳେ ବେଲାରଫୋନ୍‌ଙ୍କ ମନରେ ଭାରି କଷ୍ଟ ହେଲା । ସେ ତାକୁ କହିଲେ, 'ମୁଁ ଲିସିଆକୁ ଯାଉଛି, କିନ୍ତୁ ମୁଁ ପୁଣି ଏଇଠାରେ ତୋତେ ଦେଖିବାକୁ ଫେରିଆସିବି ।"

ଏଇ ପିଲାଟି ଦିନେ ଗ୍ରୀସ୍‌ର ଜଣେ ବଡ଼ କବିରୂପେ ପ୍ରସିଦ୍ଧହେଲା । ସେ କଳ୍ପନାରାଜ୍ୟରେ ଯେତେ ବୁଲିଲା, ଯେତେ ଅଦ୍ଭୁତ କାର୍ଯ୍ୟ କଲା, ତାହା ତୁଳନାରେ ବେଲାରଫୋନ୍‌ଙ୍କ କୃତିତ୍ୱ ବଡ଼ନୁହେଁ ।

———

# ସାମ୍ଭାର୍ସର ନଅର

ଇଥାକା ହେଉଛି ଗ୍ରୀସ୍‌ର ଏକ ରାଜ୍ୟ । ସେହି ରାଜ୍ୟର ରାଜା ଅଲସେସ୍ ଥରେ ଟ୍ରୟକୁ ଯୁଦ୍ଧ କରିବାକୁ ଯାଇଥିଲେ । ଅନେକ ଦିନଯାଏ ଯୁଦ୍ଧ ଚାଲିଲା । ଯୁଦ୍ଧ ଶେଷରେ ସେ ଆପଣା ସୈନ୍ୟମାନଙ୍କୁ ନେଇ ନିଜ ରାଜ୍ୟକୁ ଫେରୁଥିଲେ । ଥରେ ତାଙ୍କ ଜାହାଜ ଗୋଟିଏ ଅଜଣା ଦ୍ୱୀପର କୂଳରେ ଲାଗିଲା । ସେତେ-ବେଳକୁ ଜାହାଜରୁ ପିଇବାପାଣି ଓ ଖାଇବାଜିନିଷ ସରିଆସିଥିଲା । ଦ୍ୱୀପରୁ ମଧୁରପାଣି ଓ ଖାଦ୍ୟ ସଂଗ୍ରହ କରି ଆଣିବାପାଇଁ ଅଲସେସ କେତେଜଣ ଲୋକଙ୍କୁ ପଠାଇଲେ । ଲୋକମାନେ ଦ୍ୱୀପ ଭିତରକୁ ଗଲେ, କିନ୍ତୁ ସେଦିନ ସେମାନେ ଫେରିଆସିଲେନାହିଁ ।

ଏଣେ ଜାହାଜରେ ଅଲସେସ ଓ ତାଙ୍କର ଲୋକମାନେ ଅପେକ୍ଷାକରି ରହିଥାନ୍ତି । ଏହିପରି ଚାହିଁ ଚାହିଁ ଅନେକଦିନ ଗଲା । ମାତ୍ର ଯେଉଁମାନେ ଦ୍ୱୀପରେ ଓହ୍ଲାଇ ପାଣି ଓ ଖାଦ୍ୟ ଆଣିବାକୁ ଯାଇଥିଲେ ସେମାନେ ଫେରିଲେ ନାହିଁ । ଶେଷରେ ଅଲସେସ ସ୍ଥିରକଲେ ଯେ ସେ ନିଜେ ଦ୍ୱୀପକୁ ଯାଇ ସେମାନଙ୍କର ସନ୍ଧାନ ନେବେ । ଜାହାଜରେ ରହିଥିବା ଅନ୍ୟ ଲୋକମାନେ କହିଲେ, "ଆପଣ ହେଉଛନ୍ତି ଆମମାନଙ୍କର ରାଜା । ଯଦି ଦୈବାତ୍ କିଛି ବିପଦ ଘଟେ ଓ ଆପଣ ଫେରିଆସିନପାରନ୍ତି, ତେବେ ହେବ କଅଣ ? ଆପଣ ନିଜେ ଯାଆନ୍ତୁ ନାହିଁ—ଅନ୍ୟ କେହି ଯାଉ ।" ଏହିପରି କହି ସେମାନେ ରାଜାଙ୍କୁ ନିବର୍ତ୍ତାଇଲେ ।"

କିନ୍ତୁ ରାଜା ଜିଦ୍ ଧରି ବସିଲେ ଯେ ସେ ନିଜେ ଯାଇ ଲୋକଙ୍କର ସନ୍ଧାନ ନେବେ । ସେ କହିଲେ, "ତୁମେ କହୁଛ ମୁଁ ତୁମର ରାଜା, ତେଣୁ ମୋର କର୍ତ୍ତବ୍ୟ ହେଉଛି ନିଜେ ଯାଇ ସେମାନଙ୍କୁ ଖୋଜିଆଣିବି ।" ଏହା କହି ରାଜା ଖଣ୍ଡା ଓ ବର୍ଚ୍ଛା ଧରି ଦ୍ୱୀପରେ ଓହ୍ଲାଇ ସେହି ବଣଆଡ଼କୁ ଚାଲିଲେ । କିଛି ଦୂର ଚାଲିଯିବା ପରେ ଜଣେ ଯୁବକଙ୍କ ସହିତ ତାଙ୍କର ଦେଖାହେଲା । ସେ ଦେହରେ ଗୋଟିଏ ହାଲୁକା ପୋଷାକ ଓ ମୁଣ୍ଡରେ ଟୋପି ପିନ୍ଧିଥିଲେ ।

ଟୋପିର ଦୁଇପାଖେ ଗୋଟିଏ ଲେଖାଏଁ ଡେଣା ଲାଗିଥାଏ । ତାଙ୍କ ହାତରେ ଗୋଟିଏ ବାଡ଼ ଥିଲା । ବାଡ଼ଟି ଏପରି ତିଆରି ଯେ ଠିକ୍ ଦୁଇଟି ସାପ ଗୁଡ଼େଇ ହୋଇଥିଲାପରି ଦିଶୁଥିଲା । ସେ ଏପରି ବେଗରେ ଚାଲୁଥିଲା ଯେ ତାଙ୍କ ପାଦ ଭୂଇଁରେ ଲାଗିଲାପରି ଜଣାପଡ଼ୁନଥିଲା । ଅଲିସେସ ଏହାଙ୍କୁ ଭଲରୂପେ ଚହ୍ନିଥିଲେ, ଏହାଙ୍କଠାରୁ ସେ ଅନେକ ଜ୍ଞାନ ଅର୍ଜିଥିଲେ । ଏ ହେଉଛନ୍ତି ମର୍କ୍ୟୁର ।

ଅଲିସେସଙ୍କୁ ଏ ଦ୍ୱୀପରେ ଯାଉଥିବାର ଦେଖି ମର୍କ୍ୟୁର ପଚାରିଲେ, "ତୁମେ ତରତର ହୋଇ କୁଆଡ଼େ ଚାଲିଛ ? ଏ ଦ୍ୱୀପକୁ ଆସିବା କେଡ଼େ ବିପଦର କଥା କଣ ଜାଣିନାହଁ ? ଏଠାରେ ସାମ୍ଥାର୍ସବୋଲି ଜଣେ ସ୍ତ୍ରୀ ଅଛି । ସେ ଗୁଣିବିଦ୍ୟା ଜାଣେ । ଯିଏ ଏ ଦ୍ୱୀପକୁ ଆସେ, ତାକୁ ସେ ଗୁଣିବିଦ୍ୟା ବଳରେ ଗୋଟାଏ ପଶୁ, ନୋହିଲେ ଗୋଟାଏ ପକ୍ଷୀ କରିଦିଏ । ସେ ଯାହାଠାରେ ଯେଉଁ ଜନ୍ତୁର ଗୁଣ ଦେଖେ, ତାକୁ ସେହି ଜନ୍ତୁ କରିଦିଏ । ସେଥିପାଇଁ ତୁମେ ଏ ଦ୍ୱୀପରେ ଗୋଟାଏ ହେଲେ ମଣିଷ ଦେଖିବାକୁ ପାଇବ ନାହିଁ—ଦେଖିବ ଖାଲି ବାଘ, ସିଂହ, ଘୁଷୁରି, ପାରା, କାଉ, ପେଚା ଆଦି । ସେମାନେ ସବୁ ମଣିଷ ଥିଲେ । ମନ୍ତ୍ରକରି ସେ ସେମାନଙ୍କୁ ଏପରି ଜୀବଜନ୍ତୁ କରିଦେଇଛି । ଏଇ ବଣ ମଝିରେ ତାର ନଅର ଦିଶୁଛି । ତାହା ସୁନ୍ଦର ମାର୍ବଲ ପଥରରେ ତିଆରି । ସେଇ ନଅର ଭିତରେ ସେ ରହେ । ତାକୁ ସାବଧାନ ରହିଥିବ ।"

ଅଲିସେସ କହିଲେ, "ମୁଁ ଏ ଦ୍ୱୀପକୁ ଆସିଲାବେଳୁ ଗୋଟାଏ ହଳଦିଆବସନ୍ତ ପକ୍ଷୀ ମୋ ପଛେ ପଛେ ଉଡ଼ିଆସୁଛି । ତାର ରବଟି ଅତି କରୁଣ । ତା ରବ ଶୁଣି ମୁଁ ମନେକଲି, ସତେ ଅବା କିଛି କହିବ ବୋଲି ସେ ମୋତେ ଡାକୁଛି । ସେ କଅଣ ପ୍ରକୃତରେ ହଳଦିଆବସନ୍ତ ଚଢ଼େଇଟିଏ, କି ସାମ୍ଥାର୍ସ କୌଣସି ଲୋକକୁ ଚଢ଼େଇ କରିଦେଇଛି ?"

ମର୍କ୍ୟୁର ଉତ୍ତର କଲେ, "ସେ ପ୍ରକୃତରେ ହେଉଛନ୍ତି ରାଜା ପିକସ । ସେ ରାଜା ନିଜର ଚକଚକିଆ ପୋଷାକ, ସୁନାର ମୁକୁଟ ଓ ବେକର ହାର ଯେନି ଗର୍ବ କରୁଥିଲେ । ସେଥିପାଇଁ ସାମ୍ଥାର୍ସ ତାଙ୍କୁ ଗୋଟିଏ ହଳଦିଆବସନ୍ତ ପକ୍ଷୀ କରିଦେଇଛି । ତାର ସ୍ୱର ଯେ କାହିଁକି ଏତେ କରୁଣ ବୁଝିପାରୁଥିବ । ତୁମେ ନଅର ପାଖକୁ ଗଲେ ଅନେକ ସିଂହ, ବାଘ, ଗଧିଆ ପ୍ରଭୃତି ଦେଖିବାକୁ

ଯାଇବ । ସେମାନେ ତୁମ ପାଖକୁ ଦୌଡ଼ିଆସିବେ । ଏମାନେ ସବୁ ଆଗେ ତୁମରିପରି ମଣିଷ ଥିଲେ, କିନ୍ତୁ ସେମାନଙ୍କର ସ୍ୱଭାବ ଥିଲା ହିଂସ୍ର ଓ ନିର୍ଦ୍ଦୟ । ତେଣୁ ସେମାନଙ୍କୁ ସାଘ୍ନାର୍ସ ଏପରି ହିଂସ୍ର ଜନ୍ତୁରେ ପରିଣତ କରିଛି । ସେମାନଙ୍କ ଭିତରୁ ଯାହାର ସ୍ୱଭାବ ଯେଉଁ ଜନ୍ତୁପରି ସେ ତାକୁ ସେହିପରି ଜନ୍ତୁ କରିଦେଇଛି ।

ଅଲିସେସ ଏକଥା ଶୁଣି ବଡ଼ ଚିନ୍ତିତ ହେଲେ । ସେ ମର୍କ୍ୟୁରିଙ୍କୁ ପଚାରିଲେ, "ମୋ ଜାହାଜର କେତେକ ଲୋକ ପାଣି ଓ ଖାଦ୍ୟ ନେବାପାଇଁ ଏଇ ଦ୍ୱୀପରେ ଓହ୍ଲାଇଥିଲେ । ଅନେକଦିନ ଗଲାଣି । ସେମାନେ ଫେରି ନଆସିବାରୁ ମୁଁ ସେମାନଙ୍କୁ ଖୋଜିବାକୁ ଯାଉଛି । ସାଘ୍ନାର୍ସ ସେମାନଙ୍କୁ ଏହିପରି କୌଣସି ଜନ୍ତୁ କରିଦେଇଛି ବୋଲି ତୁମେ ଭାବୁଛ କି ?"

ମର୍କ୍ୟୁରି ହସି ହସି କହିଲେ, "ନିଶ୍ଚୟ, ଏଥିରେ ସନ୍ଦେହ ନାହିଁ । ମୁଁ ଠିକ୍ ଜାଣେ, ସାଘ୍ନାର୍ସ ପ୍ରଥମେ ସେମାନଙ୍କୁ ନଅରକୁ ନେଇ ଅନେକ ଭଲ ଭଲ ଜିନିଷ ଖାଇବାକୁ ଦେଲା । ସେମାନେ ଏଡ଼େ ପେଟୁ ଯେ ଘୁଷୁରି ଭଳି ଗୁଡ଼ାଏ ଖାଇଲେ । ସେମାନେ ଖାଇବା ବିଷୟରେ ଘୁଷୁରିପରି । ତେଣୁ ସାଘ୍ନାର୍ସ ସେମାନଙ୍କୁ ଘୁଷୁରି କରିଦେଇଛି ।"

ଏ କଥା ଶୁଣି ଅଲିସେସଙ୍କର ମୁଣ୍ଡ ଘୂରିଗଲା । ତାଙ୍କ ଜାହାଜର ବାଇଶ ଜଣ ଲୋକ ଦ୍ୱୀପରେ ଓହ୍ଲାଇଥିଲେ । ତେବେ ସେ କଅଣ ବାଇଶଟି ଘୁଷୁରି ଘେନି ଫେରିବେ ? ସେ ବିଚାରିକଲେ, ଏହି ବୀରମାନେ ମୋ ପାଇଁ ଏତେ କଷ୍ଟ ସହିଛନ୍ତି । ମୁଁ ସେମାନଙ୍କୁ ଘୁଷୁରି ଜୀବନରୁ ଉଦ୍ଧାର ନ କରି ଫେରିବି ନାହିଁ । ସେଥିପାଇଁ ଯେତେ କଷ୍ଟ ସହିବାକୁ ପଡ଼ିବ ସହିବି ।"

ମର୍କ୍ୟୁରି କହିଲେ, "ହଁ, ସେମାନଙ୍କୁ ଉଦ୍ଧାର କରିବା ତୁମର କର୍ତ୍ତବ୍ୟ, କିନ୍ତୁ ସେଥିପାଇଁ ଦରକାର ବହୁତ ଶକ୍ତି ଓ ବୁଦ୍ଧି । ଯଦି ସାଘ୍ନାର୍ସର ଟିକିଏ ସୁବିଧା ହୁଏ ଓ ତୁମେ ସାବଧାନ ନହୁଅ ତେବେ ତୁମକୁ ସେ ଗୋଟିଏ କୋକିଶିଆଳି କରିଦେବ ।" କଅଣ କରିବାକୁ ହେବ ପରାମର୍ଶ ମାଗିବାରୁ ମର୍କ୍ୟୁରି କହିଲେ, "ମୁଁ ଯେଉଁ ଉପାୟ କହୁଛି ଠିକ୍ ତାହା କଲେ ତୁମେ ନିଜକୁ ସାଘ୍ନାର୍ସ ହାତରୁ ରକ୍ଷା କରି ତୁମର ଅନୁଚରମାନଙ୍କୁ ଉଦ୍ଧାର କରିପାରିବ ।" ଏହା କହି ସେ ଗୋଟିଏ ଛୋଟ ଧଳା ଫୁଲ ତୋଳିଆଣିଲେ । ସେ ଫୁଲଟିକୁ ଅଲିସେସଙ୍କ ହାତରେ ଦେଇ କହିଲେ, "ଏଇ ଫୁଲଟି ନିଅ ।

ଏହାକୁ ଯତ୍ନରେ ସାଇତିରଖିବ । ଏଇଟିର କେତେକ ବିଶେଷ ଶକ୍ତି ଅଛି । ସାରା ପୃଥିବୀରେ ଏହାଭଳି ଆଉ ଗୋଟିଏ ଫୁଲ ମିଳିବ ନାହିଁ । ମାବଲର ନଅର ଭିତରେ ପଶିଲାବେଳେ ଫୁଲଟିକୁ ଶୁଙ୍ଘୁଥିବ । ସାମୁଆର୍ସ ଖାଇବାପାଇଁ ତୁମକୁ ଭଲ ଭଲ ଖାଦ୍ୟ ଓ ପିଇବାକୁ ପାନୀୟ ଆଣିଦେବ । ସେତେବେଳେ ବରାବର ଏଇ ଫୁଲକୁ ଶୁଙ୍ଘିଲେ ସାମୁଆର୍ସର ମନ୍ତ୍ର ତୁମଉପରେ କାମ କରିବ ନାହିଁ—ତୁମେ ରକ୍ଷାପାଇଯିବ ।" ଏହା କହି ମର୍କ୍ୟୁରି ସେଠାରୁ ଚାଲିଗଲେ ।

ଅଲସେସ ଫୁଲଟି ଧରି ଚାଲିଲେ । ସାମୁଆର୍ସର ନଅର ପାଖରେ ପହଞ୍ଚିଲା ମାତ୍ରେ କେତେ ସିଂହ, ବାଘ, ଗଧିଆ ଆନନ୍ଦରେ ତାଙ୍କ ପାଖକୁ ଦୌଡ଼ି ଆସିଲେ । ସେମାନେ ତାଙ୍କୁ ଆଦରରେ ଡାକିଲାପରି ଶବ୍ଦ କରୁଥିଲେ । କିନ୍ତୁ ଅଲସେସ ତ ଜାଣିପାରିଥିଲେ ଯେ ଏଗୁଡ଼ାକ ନିର୍ଦ୍ଦୟ ଲୋକ ହୋଇଥିବାରୁ ସାମୁଆର୍ସ ଏମାନଙ୍କୁ ଏପରି ହିଂସ୍ର ଜନ୍ତୁ କରିଦେଇଛି । ଟିକିଏ ସୁବିଧା ପାଇଲେ ସେମାନେ ଅଲସେସଙ୍କୁ ମଧ୍ୟ ଛିକି ଛିକି କରିଦେବେ । ସେ ନିଜର ବର୍ଚ୍ଛା ଧରି ସେମାନଙ୍କୁ ମାରିବାକୁ ଧାଇଁଲେ । ଜନ୍ତୁଗୁଡ଼ାକ ଭୟପାଇ ପଳାଇଗଲେ ।

ଅଲସେସ ନଅର ଭିତରେ ପ୍ରବେଶ କଲେ । ସେ ଗୋଟିଏ ନାରୀର ଗୀତଧ୍ୱନି ଶୁଣିପାରିଲେ । ତା ସଙ୍ଗେ ସଙ୍ଗେ ଗୋଟାଏ ଠକ୍ ଠକ୍ ଶବ୍ଦ ମଧ୍ୟ ଶୁଣାଯାଉଥିଲା । ସେଥିରୁ ଅଲସେସ ଅନୁମାନ କରିନେଲେ ଯେ ସ୍ତ୍ରୀଲୋକଟି ତନ୍ତରେ ଲୁଗା ବୁଣୁଛି ଓ କଣ୍ଡା ଚାଲିଲାବେଳେ ଠକ୍ ଠକ୍ ଶବ୍ଦ ହେଉଛି । ଲୁଗା ବୁଣିବା ସଙ୍ଗେ ସଙ୍ଗେ ସ୍ତ୍ରୀଲୋକଟି ଗୀତ ଗାଉଛି । ଯେଉଁ ଘରୁ ସେ ଶବ୍ଦ ଆସୁଥିଲା, ତାର କବାଟ ପାଖକୁ ଯାଇ ଅଲସେସ ଆହୁରି କେତେଗୁଡ଼ିଏ ଯୁବତୀଙ୍କର କଥାବାର୍ତ୍ତା ଓ ହସ ଶୁଣିପାରିଲେ । ସେ କବାଟ ଠେଲି ଘର ଭିତରକୁ ପଶିଗଲେ । ଅତି ସୁନ୍ଦରୀ ଯୁବତୀଟିଏ ତନ୍ତ ପାଖରେ ବସି ଲୁଗା ବୁଣୁଥିଲା । ସେ ଗୀତ ବନ୍ଦକରି ତନ୍ତପାଖରୁ ଉଠିଆସିଲା । ସେ ହସି ହସି ଅଲସେସଙ୍କ ପାଖକୁ ଦୌଡ଼ିଆସି ତାଙ୍କୁ ଅଭ୍ୟର୍ଥନା କରି କହିଲା, "ଆପଣଙ୍କ ଆସିବାକୁ ଆମେ ଅନେକଦିନୁ ଚାହିଁରହିଛୁ । ଆଜ ଆପଣଙ୍କୁ ପାଇ ଆମେ ଧନ୍ୟ ହେଲୁ ।" ଏହି ସୁନ୍ଦରୀ ଯୁବତୀଟି ହେଉଛି ସାମୁଆର୍ସ ।

ସାମୁଆର୍ସ କହିଲା, "ମହାରାଜ, ଆପଣଙ୍କର ଯେଉଁ ଅନୁଚରମାନେ ଏଠାକୁ ଆସିଥିଲେ ସେମାନେ ଉପଯୁକ୍ତ ଅଭ୍ୟର୍ଥନା ପାଇଛନ୍ତି । ସେମାନେ ଯାହା କିଛି ଚାହିଁଛନ୍ତି ସେସବୁ ପାଇଛନ୍ତି । ଆପଣ ସେମାନଙ୍କ ପାଖକୁ ଯିବାକୁ

ଆଗ୍ରହ କରୁଥିବେ । କିନ୍ତୁ ତା ପୂର୍ବରୁ ଆପଣ ଖାଇପିଇ ଟିକିଏ ବିଶ୍ରାମ ନିଅନ୍ତୁ । ତା'ପରେ ସେମାନଙ୍କ ସଙ୍ଗେ ଆପଣଙ୍କର ଦେଖାହେବ । ଆସନ୍ତୁ ଦେଖିବେ, ଆମେ ଲୁଗାରେ କିପରି ଆପଣଙ୍କ ଅନୁଚରମାନଙ୍କର ରୂପ ବୁଣିଛୁ ।"

ସାପ୍ତ୍ୱାର୍ସି ହାତରେ ଖଣ୍ଡିଏ ଛୋଟ ବାଡ଼ି ଥିଲା । ସେଇ ବାଡ଼ିଟି ଚନ୍ଦ୍ରଆଡ଼କୁ ଦେଖାଇ ସାପ୍ତ୍ୱାର୍ସି କହିଲା, "ଏଇ ଦେଖନ୍ତୁ, ଆମେ କେତେ ପରିଶ୍ରମ କରି ଆପଣଙ୍କ ଅନୁଚରମାନଙ୍କ ରୂପ ଲୁଗାରେ ବୁଣିଛୁ ।" ଅଲିସେସ ସେ ଲୁଗାକୁ ଚାହିଁ ଦେଖିଲେ, ତାଙ୍କ ଅନୁଚରମାନଙ୍କର ରୂପ । ପ୍ରତ୍ୟେକ ଲୋକ ଚକଚକିଆ ପୋଷାକ ପିନ୍ଧି ଗୋଟିଏ ଗୋଟିଏ ସୁନା ଚଉକିରେ ବସିଛନ୍ତି ଓ ସେମାନଙ୍କ ଆଗରେ ଟେବୁଲ ଉପରେ ଥିବା ଖାଦ୍ୟକୁ ଲୋଭରେ ଗିଳିଯାଉଛନ୍ତି, ପାନୀୟ ପିଉଛନ୍ତି । କେବଳ ଏହି ଦୃଶ୍ୟ ପର୍ଯ୍ୟନ୍ତ ଲୁଗାରେ ଦେଖିବାକୁ ମିଳିଲା । ସାପ୍ତ୍ୱାର୍ସି ବଡ଼ ଚାଲାକ୍—ତାର ମନ୍ତ୍ରରେ ସେ ଶେଷରେ ସେମାନଙ୍କୁ କଅଣ କରିଥିଲା ତାହା ଅଲିସେସଙ୍କୁ ଦେଖାଇଲାନାହିଁ ।

ସାପ୍ତ୍ୱାର୍ସି ଅଲିସେସଙ୍କୁ କହିଲା, "ଆପଣଙ୍କ ଚେହେରା, ଗାମ୍ଭୀର୍ଯ୍ୟ ଓ ସାହସ ଦେଖି ମୁଁ ଅନୁମାନ କରୁଛି ଆପଣ ସାଧାରଣ ଲୋକ ନୁହନ୍ତି । ଆପଣ ନିଶ୍ଚୟ ଜଣେ ରାଜା । ମୋର ବିନୀତ ଅନୁରୋଧ, ଆପଣ ମୋ ସଙ୍ଗେ ଆସନ୍ତୁ । ଆପଣଙ୍କୁ ରାଜୋଚିତ ଆତିଥ୍ୟ ଦେଖାଇବାରେ ତ୍ରୁଟି ହେବ ନାହିଁ ।"

ରାଜା ସାପ୍ତ୍ୱାର୍ସିର ପଛେ ପଛେ ଯାଇ ଗୋଟିଏ ସୁସଜ୍ଜିତ ହଲ୍‌ରେ ପହଞ୍ଚିଲେ । ସେ ହଲ୍‌ର ମଝିରେ ଗୋଟିଏ ଅତି ସୁନ୍ଦର ସୁନାର ସିଂହାସନ ପଡ଼ିଥିଲା । ସାପ୍ତ୍ୱାର୍ସି ଭାରି ଆଦର ଦେଖାଇ ଅଲିସେସଙ୍କ ହାତଧରି ତାଙ୍କୁ ସିଂହାସନ ଉପରେ ବସାଇଲା ଓ ଜଣେ ଚାକରକୁ ଡାକି କହିଲା, "ଯାଆ, ରାଜାମାନଙ୍କ ପାଇଁ ଯେଉଁ ପାନୀୟ ଅଲଗା ରଖାଯାଇଛି, ସେଥିରୁ ଗୋଟିଏ ବୋତଲ ଆଣିବୁ ।"

ଏଇ ସୁନ୍ଦରୀ ଯୁବତୀର ଏ ସବୁ ଆଦର ଯତ୍ନରେ ଆଲିସେସ ଭୁଲିଲେ ନାହିଁ । ମର୍କ୍ୟୁରିଙ୍କଠାରୁ ସେ ତାର ପ୍ରକୃତ ପରିଚୟ ପାଇଥିଲେ । ସେଥିପାଇଁ ସେ ଅବିରତ ସେହି ଧଳାଫୁଲଟିକୁ ଶୁଙ୍ଘି ଲାଗିଥାନ୍ତି ।

ଏଥିମଧ୍ୟରେ ଚାକର ପାନୀୟ ବୋତଲ ଆଣି ପହଞ୍ଚିଲା ଓ ଗୋଟିଏ ଗିଲାସରେ ପାନୀୟ ଟିକିଏ ଭରି ଅଲିସେସଙ୍କ ହାତକୁ ଗିଲାସଟି ବଢ଼ାଇଦେଲା ।

ଏ ପାନୀୟରେ ସାମ୍ବାର୍ସ ମନ୍ତ୍ର କରିଥିଲା । ଏହା ପିଇବାକୁ ଯେତିକ ମଧୁର ଏହାର ଗୁଣ ସେତିକ ମାରମ୍ଭକ । ଏହାକୁ ପିଇଲେ ରକ୍ଷା ନାହିଁ । ସେ ପିଇଲା,



ସେ ନଷ୍ଟ ହୋଇ ଗୋଟାଏ କ‍ ପଶୁ ବା ପକ୍ଷୀ ହୋଇଯିବ । ସାମ୍ବାର୍ସ ହସି ହସି କହିଲା, "ମହାରାଜ, ଶୀଘ୍ର ଦଅନ୍ତୁ । ଦେଖିବେ ଆପଣଙ୍କର ସବୁ ଚିନ୍ତା କୁଆଡ଼େ ଉଭେଇଯିବ । ଏ‍ ଏ ପାନୀୟର ବିଚିତ୍ର ଗୁଣ ।"

ଅଲସେସ୍ ଡାହାଣ ହାତରେ ଗିଲସଟି ଧରିଥାନ୍ତି, ଏଣେ ବାଆଁ ହାତର ଧଳା ଫୁଲଟିକୁ ନାକପାଖରେ ଧରି ଶୁଙ୍ଘୁଥାନ୍ତି । ଫୁଲର ସୁଗନ୍ଧରେ ତାଙ୍କର ଚିତ୍ତ ପୂରିଯାଉଥାଏ । ସେ ହଠାତ୍ ଗିଲସର ପାନୀୟତକ ପିଇଦେଲେ । ସାଯ୍ବାର୍ସ ଭାବିଥିଲା ଯେ ତାହା ପିଇଦେଲାକ୍ଷଣି ରାଜା ଗୋଟାଏ କୋକିଶିଆଳ ହୋଇଯିବେ । କିନ୍ତୁ ତାର ମନ୍ତ୍ର କାମକରୁନଥିବା ଦେଖି ସେ ରାଗିଉଠିଲା । ଏବେ ତାର ନିଜ ରୂପ ପ୍ରକାଶ ପାଇଲା । ସେ ଚିତ୍କାରକରି କହିଉଠିଲା, "ଆରେ ହତଭାଗ୍ୟ ! ତୁ ଏତେବେଳଯାକେ ମଣିଷ ଦେହ ଧରି ରହିଛୁ କିପରି ? ଆଚ୍ଛା ଦେଖ !" ଏହା କହି ସେ ତାର ମନ୍ତ୍ର ବାଡ଼ିରେ ଅଲସେସଙ୍କୁ ଏକ ପାହାର ଦେଲା । ପୁଣି କହିଲା, "ତୋର ପ୍ରକୃତି ଯେଉଁ ପଶୁର ପ୍ରକୃତିପରି ତୁ ସେହି ପଶୁ ହୋଇଯାଆ । ତୁ ଯେବେ ଘୁଷୁରି ହେବାର ଯୋଗ୍ୟ, ତେବେ ଘୁଷୁରି ହୋଇ ତୋ ସାଥିଙ୍କ ପାଖେ ରହ । ସିଂହ ହେବାର ଥିଲେ ସିଂହ ହୁଅ, ନହେଲେ କୋକିଶିଆଳ ହୋଇ କୁକୁଡ଼ା ଚୋରାଇ ଖାଆ । ମୋ ପାନୀୟ ତୋ ପେଟରେ ପଡ଼ିଛି । ତୁ ଆଉ କେବେ ମଣିଷ ହୋଇପାରିବୁ ନାହିଁ ।"

ମାତ୍ର ଅଲସେସଙ୍କର କିଛି ହେଲାନାହିଁ । ମର୍କ୍ୟୁରି ଦେଇଥିବା ଫୁଲର ଗୁଣ କମ୍ ନୁହେଁ । ସେ ଫୁଲଟି ଯେତିକ ଶୁଙ୍ଘୁଥାନ୍ତି, ତାଙ୍କର ବଳ ସେତିକ ବଢ଼ୁଥାଏ । ଏଥର ଅଲସେସ ଗିଲସଟା ତଳେ ଫିଙ୍ଗିଦେଇ ଖୋଲରୁ ଖଣ୍ଡା ବାହାରକଲେ । ସେ ସାଯ୍ବାର୍ସର ମୁଣ୍ଡର ବାଳକୁ ଧରି ତାକୁ ଟାଣି ଟାଣି ନେଇ କହିଲେ, "ଅସୁରୁଣୀ ଦେଖ, ଏଇ ଖଣ୍ଡାରେ ତୋର ପ୍ରାଣ ନେବି । ତୁ ଆଉ ଲୋକଙ୍କୁ ଭୁଲାଇଆଣି ସେମାନଙ୍କୁ ପଶୁପକ୍ଷୀ କରିପାରିବୁନାହିଁ ।"

ଅଲସେସଙ୍କର ଚକଚକିଆ ଖଣ୍ଡାକୁ ଦେଖି, ତାଙ୍କର କଥା ଶୁଣି ସାଯ୍ବାର୍ସ ଡରିଗଲା । ସାଯ୍ବାର୍ସ ଅତି ବିକଳ ହୋଇ କହିଲା, "ରାଜା ଅଲସେସ ମୁଁ ଏବେ ଆପଣଙ୍କୁ ଚିହ୍ନିଲିଣି । ମୋତେ କ୍ଷମା ଦିଅନ୍ତୁ । ମର୍କ୍ୟୁରି ମୋତେ କହିଥିଲେ ଯେ ଆପଣଙ୍କ ଛଡ଼ା ଆଉ କେହି ମୋତେ ଜିଣିପାରିବେ ନାହିଁ । ତାଙ୍କ କଥା ସତ ହେଲା । ଆପଣ ମୋତେ ଜିଣିଛନ୍ତି,ଏଣିକି ଏ ନଅର ଆପଣଙ୍କର । ଆପଣ ଯାହା ଇଚ୍ଛା ତାହା କରିପାରିବେ । ମୋର ପ୍ରାର୍ଥନା, ମୋର ଜୀବନ ରକ୍ଷାକରନ୍ତୁ ।"

ଅଲସେସ କହିଲେ, "ତୁ ମୋର ସଙ୍ଗୀମାନଙ୍କୁ ମଣିଷ ନକରିବା ପର୍ଯ୍ୟନ୍ତ ମୁଁ କିଛି ଶୁଣିବି ନାହିଁ । ଆଗେ ସେମାନଙ୍କୁ ମଣିଷକରି ମୋତେ ଫେରାଇଦେ । ତାପରେ ତୋ ଜୀବନ ରଖିବା କଥା ବିଚାରକରିବି ।"

ସାପ୍ସାର୍ସ ଅନ୍ୟ ଉପାୟ ନଦେଖି ରଜାଙ୍କୁ ନଅର ପଛପଟରେ ଥିବା ଘୁଷୁରିଶାଳକୁ ନେଇଗଲା । ଅଲସେସ୍ ଗୁହାଳଘର କବାଟ ଫିଟାଇଦେବାରୁ ତା ଭିତରୁ ବାଇଶିଟି ଘୁଷୁରି ବାହାରି ଆସି କୁଉଁକୁଉଁ ହୋଇ ତାଙ୍କୁ ବେଢ଼ିଗଲେ । ରଜା ଅନୁମାନ କରିନେଲେ ଯେ ଏଇ ବାଇଶିଟି ତାଙ୍କ ଦଳର ଲୋକ ହେବେ । ସେ ସାପ୍ସାର୍ସଙ୍କୁ ଧମକ ଦେଇ କହିଲେ, "ଶୀଘ୍ର ଏମାନଙ୍କୁ ପୁଣି ମଣିଷ କରିଦେ, ନହେଲେ ତୋର ମୁଣ୍ଡ କାଟିଦେବି ।"

ସାପ୍ସାର୍ସ କିଛି ମନ୍ତ୍ର ପଢ଼ି ତାର ବାଡ଼ିଟି ଘୁଷୁରିମାନଙ୍କ ଉପରେ ବୁଲାଇ ଆଣିଲା । ସୃହୁଁ ସୃହୁଁ ଅଦ୍ଭୁତ ପରିବର୍ତ୍ତନ ଘଟିଲା । ଆସ୍ତେ ଆସ୍ତେ ସେମାନଙ୍କର ରୂପ ବଦଳିଗଲା । ସେମାନେ ପୁଣି ମଣିଷ ହୋଇଗଲେ । ଏବେ ଅଲସେସ୍ ନିଜର ବନ୍ଧୁମାନଙ୍କୁ ଫେରିପାଇ ଆନନ୍ଦିତହେଲେ ।

ଏହି ସମୟରେ ପାଖ ଗଛ ଉପରୁ ଗୋଟିଏ ବିକଳ ସ୍ୱର ଶୁଣାଗଲା । ରଜା ଦେଖିଲେ, ଯେଉଁ ଚଢ଼େଇଟି ତାଙ୍କ ପଛରେ ରବ ରବ ଆସୁଥିଲା, ଏଇଟି ସେଇ ଚଢ଼େଇ । ଚଢ଼େଇଟି ପ୍ରକୃତରେ କୌଣସି ମନୁଷ୍ୟ, ଏହା ଜାଣିପାରି ରଜା ସାପ୍ସାର୍ସଙ୍କୁ ହୁକୁମ ଦେଲେ, "ତୋତେ ଏ ପକ୍ଷୀଟିକୁ ପୁଣି ମନୁଷ୍ୟ ରୂପ ଦେବାକୁ ହେବ ।" ସାପ୍ସାର୍ସ ମନ୍ତ୍ର ପଢ଼ି ବାଡ଼ିଟିକୁ ଗଛପାଖେ ବୁଲାଇଆଣିଲା । ସୃହୁଁ ସୃହୁଁ ପକ୍ଷୀଟି ଗୋଟିଏ ମଣିଷ ହୋଇଗଲା । ତାର ଦେହରେ ଚକଚକିଆ ନୀଳ ପୋଷାକ, ଗୋଡ଼ରେ ହଳଦିଆ ମୋଜା, ମୁଣ୍ଡରେ ନାନା ରତ୍ନ ଲାଗିଥିବା ସୁନା ମୁକୁଟ ଓ ଗଳାରେ ସୁନାର ହାର । ସେ ଗଛରୁ ଡେଇଁପଡ଼ି ଅଲସେସ୍ଙ୍କୁ ପ୍ରଣାମକଲେ । କହିଲେ, "ମୁଁ ହେଉଛି ରଜା ପିକ୍ସ । ଭଲ ପୋଷାକ, ଭଲ ଅଳଙ୍କାର ପିନ୍ଧି ମୁଁ ଭାରି ଗର୍ବ କରୁଥିଲି । ଏ ରାକ୍ଷସୀ ମୋତେ ପକ୍ଷୀଟିଏ କରି ରଖିଥିଲା ।"

ରଜା ପିକସ୍ ଅଲସେସ୍ଙ୍କଠାରୁ ବିଦାୟନେଇ ନିଜ ରାଜ୍ୟକୁ ଚାଲିଗଲେ । କିନ୍ତୁ ତେଣିକି ତାଙ୍କର ସ୍ୱଭାବ ପୂରା ବଦଳିଗଲା । ସେ ପୋଷାକ ଓ ଅଳଙ୍କାରର ଗର୍ବ ଛାଡ଼ି ପ୍ରଜାଙ୍କର ଉପକାର କରିବାରେ ଲାଗିପଡ଼ିଲେ ।

ସେତେବେଳକୁ ନଅରରେ ଆହୁରି ଅନେକ ସିଂହ, ବାଘ ଓ ଗଧିଆ ଥିଲେ, କିନ୍ତୁ ସେମାନଙ୍କୁ ପୁଣି ମଣିଷ କରିବାକୁ ଅଲସେସ୍ଙ୍କର ଇଚ୍ଛା ନ ଥିଲା । ନିଜ ନିଜ ମନ୍ଦ ପ୍ରକୃତିର ଫଳ ଭୋଗିବାପାଇଁ ସେମାନଙ୍କୁ ସେ ଦ୍ୱୀପରେ ଛାଡ଼ିଦେଇଗଲେ ।

ଅଲସେସ୍ ତାଙ୍କର ଲୋକମାନଙ୍କୁ ଜାହାଜରୁ ସେହି ନଅରକୁ ଡକାଇ ଆଣିଲେ । ନଅରରେ କୌଣସି ଜିନିଷର ଅଭାବ ନ ଥିଲା । ସେମାନେ କେତେଦିନ ପର୍ଯ୍ୟନ୍ତ ନଅରରେ ସୁଖରେ ରହିଲେ । ଏଥିପୂର୍ବରୁ ସେମାନେ ଅନେକ ଦୁଃଖ କଷ୍ଟ ସହି କ୍ଲାନ୍ତ ହୋଇପଡ଼ିଥିଲେ । ଏବେ ସେମାନଙ୍କର କ୍ଲାନ୍ତି ଦୂରହୋଇଗଲା, ମନ ପୁଣି ଆନନ୍ଦିତ ହେଲା । ଦିନେ ଅଲସେସ୍ ନିଜର ଲୋକମାନଙ୍କୁ ସଙ୍ଗରେ ନେଇ ପୁଣି ଜାହାଜରେ ବସି ନିଜ ରାଜ୍ୟକୁ ଫେରିଗଲେ ।

# ନର୍ସିସସ୍ ଓ ପ୍ରତିଧ୍ୱନି

ବହୁକାଳ ପୂର୍ବେ ପୃଥିବୀରେ ପରୀମାନେ ରହୁଥିଲେ । ସେମାନେ ଦେଖିବାକୁ ଭାରି ସୁନ୍ଦରୀ । କେତେକ ପରୀ ବଣରେ ରହୁଥିଲେ, କେହି ବା ଜଳରେ ରହୁଥିଲେ । ସେମାନଙ୍କର ଅଦ୍ଭୁତ ଶକ୍ତିଥିଲା । ସେମାନେ ଇଚ୍ଛା ଅନୁସାରେ ଏଣେତେଣେ ଯାଇପାରୁଥିଲେ ।

'ପ୍ରତିଧ୍ୱନି' ବୋଲି ଗୋଟିଏ ପରୀ ଥିଲା । ସେ ଗପ କରିବାକୁ ବହୁତ ଭଲପାଉଥିଲା । ତା ପାଟି କେତେବେଳେ ହେଲେ ବନ୍ଦ ନ ଥାଏ । ସେ ଟିକିଏ ଗର୍ବୀ । ଥରେ ସେ ସ୍ୱର୍ଗର ଜୁନୋ ନାମକ ଏକ ଦେବୀଙ୍କୁ ଅପମାନଦେଲା । ଜୁନୋ ଏଥିରେ ରାଗିଯାଇ ତାକୁ ଅଭିଶାପ ଦେଇ କହିଲେ, "ତୁ ଏତେ ଗପ କରୁଛୁ ଯେ ଟିକିଏ ଭଦ୍ରଭାବରେ କଥାବାର୍ତ୍ତା କରୁନାହୁଁ । ଏଣିକି ଶେଷକଥା ପଦକ ଛଡ଼ା ତୁ ଆଉ କିଛି କହିପାରିବୁନାହିଁ । ତୋର ନିଜର କଥା କହିବାର ଶକ୍ତି ରହିବ ନାହିଁ, ଖାଲି ଅନ୍ୟ ଲୋକର କଥା ଶୁଣି ତା' କଥାର ଶେଷପଦକ କହିବୁ । ତୋତେ କେହି ନଡାକିବାଯାଏ ତୁ ଲୁଚିରହିଥିବୁ । ମୁଁ ତୋତେ ଆଉ ଦେଖିବାକୁ ଚାହେଁନାହିଁ । ଯା, ଏଣିକି ତୁ ପାହାଡ଼ ପର୍ବତରେ ରହିବୁ— ମୋତେ ଦେଖାଦେବୁ ନାହିଁ ।"

ଦେବୀଙ୍କର ଅଭିଶାପ ସଙ୍ଗେ ସଙ୍ଗେ ଫଳିଲା । ଜୁନୋଙ୍କ କଥା ସରିଲାକ୍ଷଣି ପ୍ରତିଧ୍ୱନି କହିଲା—'ନାହିଁ' । ସେ ଯାଇ ନିର୍ଜନ ପାହାଡ଼ରେ ରହିଲା ।

ପାହାଡ଼ରେ ସେ ଲୁଚିରହିଥାଏ । ସାଙ୍ଗସାଥିମାନଙ୍କ କଥା ତାର ମନେ ପଡ଼ିଲେ ସେ କାନ୍ଦଉଠେ । ବେଳବେଳେ କାଠୁରିଆମାନେ ପାହାଡ଼କୁ କାଠ କାଟିବାକୁ ଆସନ୍ତି, ସେମାନଙ୍କ ସଙ୍ଗରେ ସେ କଥାବାର୍ତ୍ତା ହେବାକୁ ମନକରେ, କିନ୍ତୁ ତାର ତୁଣ୍ଡରୁ କଥା ବାହାରେନାହିଁ । କେବେ କୌଣସି କାଠୁରିଆ କିଛି କହିଲେ, ପ୍ରତିଧ୍ୱନି କେବଳ ତା' କଥାର ଶେଷ ପଦଟି କହେ । କେତେ କଥା କହିବ ବୋଲି ସେ ମନରେ ଭାବେ, କିନ୍ତୁ କିଛି କହିପାରେନାହିଁ ।

ଦିନେ ପ୍ରତିଧ୍ୱନି ମନଦୁଃଖରେ ଏକୁଟିଆ ବସିଛି । ଏହି ସମୟରେ ନର୍ସିସସ୍ ବୋଲି ଏକ ସୁନ୍ଦର ଯୁବକ ପାହାଡ଼ ଉପରକୁ ଉଠିଲା । ଯୁବକର ଦେହଟି ସୁନ୍ଦର । ମୁଣ୍ଡରେ ସୁନ୍ଦର କେଶ, ଆଖି ଦୁଇଟି ଉଜ୍ଜ୍ୱଳ । ତାକୁ ଦେଖିଲେ କୌଣସି ଦେବତା ବୋଲି ଭ୍ରମ ହେବ । ଏଭଳି ସୁନ୍ଦର ପୁରୁଷଟିଏ ଦେଖିଲା-କ୍ଷଣି ପ୍ରତିଧ୍ୱନି ତାକୁ ଭଲପାଇଲା । ତା' ସାଥିରେ କଥାବାର୍ତ୍ତା ହେବାକୁ ମନକଲା ।

ଜୁନୋତ ଅଭିଶାପ ଦେଇଥିଲେ ଯେ ତାକୁ କେହି ନଡାକିବାଯାଏ ସେ ଦେଖାଦେବନାହିଁ । ତେଣୁ ସେ ନର୍ସିସସ୍‌କୁ ଦେଖି ତାର ପଛେ ପଛେ ଚାଲିଲା । ସେ ଭାବିଲା, ମୋ ପାଦର ଶବ୍ଦ ଶୁଣି ସେ ମୋତେ ନିଶ୍ଚୟ ଡାକିବେ । ସେତିକିବେଳେ ମୁଁ ବାହାରିପଡ଼ି ତାଙ୍କୁ ଦେଖାଦେବି ।

ପ୍ରତିଧ୍ୱନି ଗଛପଛ ଉହାଡ଼ରେ ଲୁଚି ଲୁଚି ନର୍ସିସସ୍‌ର ପଛେ ପଛେ ଚାଲିଥାଏ । ବେଳେବେଳେ ଉଙ୍କିମାରି ତାର ସୁନ୍ଦର ରୂପକୁ ଚାହିଁଦେଉଥାଏ । କିଛି ସମୟ ପରେ ନର୍ସିସସ୍ ସନ୍ଦେହ କଲା ତା' ପଛରେ କିଏ ଜଣେ ଆସୁଛି । ସେ ବଡ଼ ପାଟିକରି ଡାକିଲା, "ମୋ ପଛରେ ଆସୁଛି କିଏ ?" ପ୍ରତିଧ୍ୱନି କେବଳ କହିଲା, 'କିଏ ?'

ନର୍ସିସସ୍ ପୁଣି ପଚାରିଲା, "କିଏ ମୋ ପଛରେ ଲୁଚି ଲଚି ଆସୁଛି ?" ଉତ୍ତର ମିଳିଲା 'ଆସୁଛି' । ନର୍ସିସସ୍ ଏଥର ଠିକ୍ ଜାଣିଲା ଯେ ତାର ପଛରେ କେହି ଜଣେ ଆସୁଛି । ସେ କହିଲା, 'ମୋ ପାଖକୁ ଆସ' । ପ୍ରତିଧ୍ୱନି 'ଆସ' ଏତିକି କହି ନର୍ସିସସ୍ ପାଖକୁ ଚାଲିଆସିଲା ।

ପ୍ରତିଧ୍ୱନି ଆନନ୍ଦରେ ନର୍ସିସସ୍‌କୁ କୁଣ୍ଢାଇବାକୁ ବାହାରିଛି, ଏହି ସମୟରେ ସେ ପ୍ରତିଧ୍ୱନିକୁ ଦୂରକୁ ଠେଲିଦେଲା । ନର୍ସିସସ୍ ବଡ଼ ଗର୍ବୀ ଥିଲା । ସେ ନିଜ

ଛଡ଼ା ଆଉ କାହାରି କଥା ଶୁଣୁନଥିଲା । ଏଥି ପୂର୍ବରୁ ସେ ଲକ୍ଷ୍ୟ କରିଥିଲା ଯେ 'ପ୍ରତିଧ୍ୱନି' ତା କଥାର ଶେଷ ପଦଟି ଛଡ଼ା ଆଉ କିଛି କହୁନଥିଲା । ତେଣୁ ସେ ତାକୁ ଅଣଦେଖା କରୁଥିଲା ବୋଲି ନର୍ସିସସ୍ ମନେ ମନେ ସ୍ଥିର କରି ନେଇଥିଲା । ପ୍ରତିଧ୍ୱନି ବ୍ୟାକୁଳ ହୋଇ ତା ଆଡ଼କୁ ଚାହିଁଲା, ମାତ୍ର ସେଥିରେ ନର୍ସିସସ୍ ମନ ଆଦୌ ତରଳିଲା ନାହିଁ ।

ସେତେବେଳକୁ ନର୍ସିସସ୍‌କୁ ଖୁବ୍ ଶୋଷ କରୁଥିଲା । ପାଖରେ ଗୋଟିଏ ନିର୍ମଳ ଜଳର ପୋଖରୀ ଦେଖି ସେ ସେଠାକୁ ଯିବାକୁ ବାହାରିଲା । ଯିବାବେଳେ ସେ ରାଗିଯାଇ ପ୍ରତିଧ୍ୱନିକୁ କହିଲେ, "ଏଠାରୁ ବାହାରିଯାଅ" । ପ୍ରତିଧ୍ୱନି ଉତ୍ତର କଲା "ଯାଅ" ।

ଅନ୍ୟ ଉପାୟ ନ ଦେଖି ପ୍ରତିଧ୍ୱନି ପାହାଡ଼ ଉପରକୁ ଫେରିଯାଇ ନିଜ ଜାଗାରେ ଲୁଚିରହିଲା । ଆଉ କାହାରିକୁ ମୁହଁ ଦେଖାଇବା ପାଇଁ ତାର ସାହସ ହେଲାନାହିଁ । ସେ ନିଜ ମନର ଦୁଃଖ ନର୍ସିସସ୍‌କୁ ଜଣାଇବାକୁ ଇଚ୍ଛାକଲା । କିନ୍ତୁ ଜଣାଇବ କିପରି ? ତାର ତ ଆଉ ନିଜର କିଛି କହିବାର ଶକ୍ତିନାହିଁ । ସେ ଯେ ଅନ୍ୟର କଥାର କେବଳ ଶେଷପଦକ ଛଡ଼ା ଆଉ କିଛି କହିପାରୁନି, ତାହାର କାରଣ ନର୍ସିସସ୍‌କୁ ବୁଝାଇଦେବା ପାଇଁ ତାର ଘୋର ଇଚ୍ଛା, କିନ୍ତୁ ତା ମଧ କରିପାରୁନି । ସେ ମନେମନେ ନର୍ସିସସ୍‌କୁ ଅଭିଶାପ ଦେଲା, "ମୁଁ ତୋତେ ଏତେ ଭଲପାଏ, ମାତ୍ର ତୁ ମତେ ଘୃଣାରେ ଠେଲିଦେଇ ଚାଲିଗଲୁ । ମୋ ମନର କଷ୍ଟ ତୁ ଟିକିଏ ବୁଝିଲୁ ନାହିଁ । ତୋର ଏ ଗର୍ବର ଦଣ୍ଡ ତୁ ଭୋଗକର । ମୁଁ ତୋର ରୂପ ଦେଖି ତୋତେ ଭଲପାଇଥିଲି । ତୁ ନିଜ ଛଡ଼ା ଆଉ କାହାରି କଥା ଚିନ୍ତା ନକରି ମୋତେ ଛାଡ଼ିଦେଲୁ । ତେଣୁ ତୁ ନିଜ ଛଡ଼ା ଅନ୍ୟ କାହା-ରିକୁ ଭଲପାଇପାରିବୁ ନାହିଁ । ତୁ ଯେପରି ମୋତେ ଘୃଣାକଲୁ , ଲୋକମାନେ ତୋତେ ସେହିପରି ଘୃଣାକରନ୍ତୁ ।"

ପ୍ରତିଧ୍ୱନି ମନେକଲା, ଏପରି ହେଲେ ନର୍ସିସସ୍ ତା' ମନର କଷ୍ଟ ଜାଣିପାରିବ, ହୁଏତ ତା' ପାଖକୁ ଫେରିଆସିବ ।

ନର୍ସିସସ୍ ପାଣି ପିଇବାପାଇଁ ପୋଖରୀ କୂଳକୁ ଗଲା । ପୋଖରୀର ପାଣି ଦର୍ପଣ ପରି ନିର୍ମଳ । ସେ ପାଣିକୁ ଚାହିଁ ଦେଖିଲା ଗୋଟିଏ ସୁନ୍ଦର ମୁହଁ ତା ଆଡ଼କୁ ଚାହିଁରହିଛି । ଏଡ଼େ ସୁନ୍ଦର ମୁହଁ ଏହାପୂର୍ବରୁ କେବେ ଦେଖିନଥିଲା ।

ସୁନ୍ଦର ଢଳଢଳ ଆଖି ! କୁଞ୍ଚକୁଞ୍ଚିଆ ବାଳଗୁଡ଼ିକ କପାଳ ଉପରେ ଉଡ଼ୁଛି । ସେ ମନେକଲା ଯେ ଗୋଟିଏ ଜଳପରୀ ତାକୁ ଚାହୁଁଛି । ତା ମନଟା ଆନନ୍ଦରେ ପୂରିଗଲା । ସେ ମନେ ମନେ ତାକୁ ଭଲପାଇବସିଲା ।



ନର୍ସିସସ୍ ଜାଣିପାରିନଥିଲା ଯେ ପାଣିରେ ଦେଖିଥିବା ମୁହଁଟି ତା' ନିଜର ପ୍ରତିବିମ୍ବ ଛଡ଼ା ଆଉ କିଛି ନୁହେଁ । ସେ କାଳରେ ମୁହଁ ଦେଖିବାପାଇଁ ଦର୍ପଣ ନଥିଲା । ତେଣୁ ନର୍ସିସସ୍ ଭଲ କରି ନିଜର ଚେହେରା ଦେଖିନଥିଲା ।

କେତେଥର ନିଜର ଚକଚକିଆ ଢାଲ ଉପରେ ସେ ନିଜର ପ୍ରତିବିମ୍ବ ଦେଖିଥିଲା, ମାତ୍ର ତାହା ଅତି ଅସ୍ପଷ୍ଟ ଓ ବଙ୍କାଟଙ୍କା । ସେହି ହେତୁରୁ ପୋଖରୀର ପାଣିରେ ପ୍ରତିବିମ୍ବ ଦେଖି ତାକୁ ସେ ଚିହ୍ନିପାରିଲାନାହିଁ । ତାହା ଗୋଟିଏ ଜଳପରୀ ବୋଲି ମନେକଲା । ପ୍ରତିଧ୍ୱନି ଯେପରି ନର୍ସିସସ୍‌କୁ ଦେଖିଲାମାତ୍ରେ ଭଲ ପାଇଥିଲା, ନର୍ସିସସ୍ ମଧ୍ୟ ଠିକ୍ ସେହି ପରି ଆପଣାର ପ୍ରତିବିମ୍ବକୁ ଦେଖିଲାମାତ୍ରେ ଭଲପାଇଲା ।

ସେ ଜଳପରୀକୁ ବହୁତ ଡାକିଲା—କିନ୍ତୁ କିଛି ଉତ୍ତର ମିଳିଲା ନାହିଁ । ସେ ଡାକିଲାବେଳେ ପାଣିରେ ଜଳପରୀର ଓଠ କିଛି କହିଲାପରି ହଲିଯାଏ, ମାତ୍ର ସେ ପରୀକୁ ଧରିବାପାଇଁ ପାଣି ଭିତରେ ହାତ ବୁଡ଼ାଇଲାକ୍ଷଣି ପରୀ କୁଆଡ଼େ ଉଭେଇଯାଏ । ସେ ପୋଖରୀ କୂଳରେ ବସିରହିଲା । ପାଣି ପୁଣି ସ୍ଥିର ହୋଇଗଲା । ନର୍ସିସସ୍ ପାଣିକୁ ଚାହିଁ ପୁଣି ସେହି ପରୀର ମୁହଁ ଦେଖିଲା, ମାତ୍ର ଯେତେ ଡାକଲେ ସୁଦ୍ଧା ସେ କିଛି ଉତ୍ତର ଦେଲାନାହିଁ ।

ସନ୍ଧ୍ୟାହେଲା—ମାତ୍ର ନର୍ସିସସ୍ ପୋଖରୀକୂଳ ଛାଡ଼ି ଅନ୍ୟ କୁଆଡ଼େ ଗଲା ନାହିଁ । ସେ ଚାହିଁଥିଲା ଜଳପରୀ ପାଣିରୁ ବାହାରିଆସି ତା ପାଖରେ ବସୁ, ଖୁସିଗପ କରୁ । କିଛି ସମୟ ପରେ ଚନ୍ଦ୍ର ଉଇଁଲା । ତାର କିରଣ ପାଣି ଉପରେ ପଡ଼ିଲା । ନର୍ସିସସ୍ ପାଣିକୁ ଚାହିଁ ଦେଖିଲା ଆଗଭଳି ପରୀ ତା' ଆଡ଼କୁ ଚାହିଁଛି । କିନ୍ତୁ ସେ ଯେତେ ଡାକଲେ ମଧ୍ୟ କିଛି ଉତ୍ତର ମିଳିଲାନାହିଁ ।

ପରୀକୁ ପାଇନପାରି ନର୍ସିସସ୍‌ର ମନରେ ବଡ଼ ଦୁଃଖ ହେଲା । ସେ ଯେ ଭ୍ରମରେ ନିଜର ପ୍ରତିବିମ୍ବକୁ ଭଲପାଇଛି, ତାହା ଜାଣିପାରିଲାନାହିଁ । ଖାଇବା ପିଇବା ସବୁ ଛାଡ଼ି ସେ ସେହି ପୋଖରୀକୂଳରେ ବସି କେବଳ ସେହି ମୁହଁକୁ ଝୁରି ହେଲା । ଦିନକୁ ଦିନ ତାର ଦେହ ଶୁଖିଆସିଲା, କିନ୍ତୁ ସେ ସେହିପରି ପାଣିକୁ ଚାହିଁଥାଏ । ପରୀର ମୁହଁ ମଧ୍ୟ ଏଣିକି ଶୁଖିଲା ଦିଶିଲା । ପରୀର ଶୁଖିଲା ମୁହଁ ଦେଖି ନର୍ସିସସ୍ ମନରେ ଆହୁରି ଦୁଃଖହେଲା ।

ଏହିପରି କେତେଦିନ ଗଲା । ନର୍ସିସସ୍‌ଙ୍କର ଦେହ ଶୁଖି କଣ୍ଟା ରହିଲା । ମାତ୍ର ସେ ଯେତେ ଚେଷ୍ଟା କଲେ ସୁଦ୍ଧା ପରୀ ପାଣିରୁ ବାହାରି ତାଙ୍କ ପାଖକୁ ଆସିଲାନାହିଁ କି କିଛି କହିଲାନାହିଁ ।

ଏଣେ ପ୍ରତିଧ୍ୱନି ପୋଖରୀ ପାଖରେ ଲୁଚି ରହି ନର୍ସିସସ୍‌ର ଅବସ୍ଥା ଦେଖୁଥାଏ । ଯେତେବେଳେ ନର୍ସିସସ୍ ମନକଷ୍ଟରେ 'ଆହା' ବୋଲି କହନ୍ତି, ପ୍ରତିଧ୍ୱନି

ଭୁଣ୍ଡରୁ ବାହାରିପଡ଼େ 'ହାଁ' । ନର୍ସିସସ୍‌ଙ୍କର ଏ କଷ୍ଟ ଦେଖି ସେ ଅଭିଶାପ ଦେଇଥିଲା ବୋଲି ମନଦୁଃଖକଲା । ମାତ୍ର ଏବେ ପ୍ରତିକାରର କିଛି ଉପାୟ ନଥିଲା ।

ନଖାଇ ନପିଇ ପୋଖରୀକୂଳେ ପଡ଼ି ପଡ଼ି ନର୍ସିସସ୍ ଆଉ ଉଠିପାରିଲା ନାହିଁ କି ପାଣି ଭିତରକୁ ଚାହିଁପାରିଲାନାହିଁ । କିଛି ସମୟ ପରେ ତାର ପ୍ରାଣବାୟୁ ବାହାରିଗଲା । ସ୍ୱର୍ଗର ଦେବତାମାନେ ଦେଖିଲେ, ପୋଖରୀକୂଳରେ ସୁନ୍ଦର ଯୁବକଟିଏ ମରି ପଡ଼ିଛି । ସେମାନେ ତାହାକୁ ଗୋଟିଏ ସୁନ୍ଦର ଧଳା ଫୁଲ କରିଦେଲେ । ଏହି ଫୁଲର ନାମ ହେଉଛି ନର୍ସିସସ୍ । ଏବେ ମଧ୍ୟ ତୁମେ ପୋଖରୀକୂଳରେ ନର୍ସିସସ୍ ଫୁଲ ଦେଖିପାରିବ । ଫୁଲ ପୋଖରୀକୂଳରୁ ପାଣି ଭିତରକୁ ଓହଳିପଡ଼ି ନିଜର ପ୍ରତିବିମ୍ବକୁ ଦେଖୁଥିଲାପରି ମନେହେବ ।

ନର୍ସିସସ୍ ମରିଯିବାରୁ ପ୍ରତିଧ୍ୱନିର ମନରେ ଦୁଃଖ ଓ ଅନୁତାପ ହେଲା । ସେ ପୋଖରୀକୂଳକୁ ଆସି ନର୍ସିସସ୍‌ର ଶେଷ ଚିହ୍ନ ସେହି ଧଳା ଫୁଲକୁ ଚାହିଁରହେ । ବେଳେ ବେଳେ ତାକୁ ହାତରେ ଆଉଁସିଦିଏ ।

ପ୍ରତିଧ୍ୱନିର ମନରେ ଏତେ ବେଶି ଦୁଃଖ ହେଲା ଯେ ସେ ପର୍ବତଗୁହା ଛାଡ଼ି ଆଉ ବାହାରକୁ ଆସିଲାନାହିଁ । କେବଳ କାଠୁରିଆମାନେ ପର୍ବତକୁ ଆସି କିଛି କହିଲେ ସେମାନଙ୍କର ଶେଷକଥା ପଦକ କହିଦିଏ । ନର୍ସିସସ୍‌ଙ୍କ କଥା ଚିନ୍ତାକରି ପ୍ରତିଧ୍ୱନି ଦିନକୁ ଦିନ ଶୁଖିଆସିଲା । ସେ ଖିଆପିଆ ଛାଡ଼ିଦେଲା । ଶୁଖି ଶୁଖି ଶେଷକୁ ତାର ଦେହରେ କିଛି ରହିଲା ନାହିଁ—ଖାଲି ରହିଗଲା ତାର ସ୍ୱରଟି ।

ଲୋକମାନେ କହନ୍ତି ପ୍ରତିଧ୍ୱନି ଏବେ ମଧ୍ୟ ବଞ୍ଚିଛି, ତାର ଦେହଟା କେବଳ ଉଭେଇ ଯାଇଛି । ମାତ୍ର ସେ ଗୁହାଆଡ଼େ ଲୁଚିରହିଛି । ପାହାଡ଼ରେ, ବଣରେ, ପୋଖରୀକୂଳରେ, କି ନିର୍ଜନ ପଡ଼ିଆରେ ତୁମେ ଯେବେ କିଛି କହିବ, ସେ ତୁମ କଥାର ଶେଷପଦଟି କହି ଉତ୍ତର ଦେବ । ତୁମେ ଯଦି କହିବ 'କିଏ ରେ' ପ୍ରତିଧ୍ୱନି ଉତ୍ତର ଦେବ 'ରେ ଏ ଏ' । ଯାହାହେଉ ସେ ସୁନ୍ଦର ପରୀ ପ୍ରତିଧ୍ୱନିକୁ ଆଉ ତୁମେ ଦେଖିବାକୁ ପାଇବ ନାହିଁ—କେବଳ ତାର ସ୍ୱର ଶୁଣିପାରିବ ।

———

# ଜାସନ ଓ ସୁନାର ଲୋମ

ଜାସନ୍ ଜଣେ ରାଜାଙ୍କର ପୁଅ । ସେହି ରାଜାଙ୍କର ନାମ ଥିଲା ଏଇସନ । ପେଲିଅସ୍ ବୋଲି ଜଣେ ଲୋକ ଏଇସନ୍‌ଙ୍କୁ ରାଜଗାଦିରୁ ତଡ଼ି ନିଜେ ରାଜା ହୋଇ ବସିଥିଲା । ଏଇସନ୍ ରାଜ୍ୟ ହରାଇ ଅନେକ ଦିନ ଏଣେ ତେଣେ ବୁଲି ଶେଷରେ ମଲେ । ପେଲିଅସ୍ ନିଶ୍ଚିନ୍ତରେ ସିଂହାସନରେ ବସି ରାଜ୍ୟ ଭୋଗକଲା ।

କ୍ରମେ ଜାସନ ଯୁବକ ହେଲେ । ସେ ମହାପଣ୍ଡିତ ଚିରନଙ୍କ ପାଖେ ପାଠପଢ଼ି ଅନେକ କଥା ଶିଖିଲେ । ତାଙ୍କର ପାଠପଢ଼ା ଶେଷହେଲା । ସେ ଜାଣିପାରିଲେ, ପେଲିଅସ୍ ତାଙ୍କ ବାପାଙ୍କୁ ତଡ଼ି ରାଜ୍ୟ ଅଧିକାର କରି ବସିଛି । ବାପାଙ୍କ ଅନ୍ତେ ସେ ରାଜାହେବାର କଥା । କିପରି ପେଲିଅସ୍‌ଙ୍କୁ ସିଂହାସନରୁ ତଡ଼ି ନିଜେ ରାଜା ହେବେ ଏହାହିଁ ତାଙ୍କର ପ୍ରଧାନ ଚିନ୍ତା ହେଲା ।

ଜାସନ ଗୁରୁଙ୍କ ଆଶ୍ରମରୁ ବିଦାୟନେଇ ବାହାରିଗଲେ । ତାଙ୍କ କାନ୍ଧରେ ଗୋଟିଏ ବାଘଛାଲ ଓ ଦୁଇ ହାତରେ ଦୁଇଟି ବର୍ଚ୍ଛା ଥିଲା । ବାଘ ଛାଲରେ ସେ ନିଜକୁ ଖରା ବର୍ଷାରୁ ରକ୍ଷାକରିପାରିବେ ଓ ବର୍ଚ୍ଛାରେ ଶତ୍ରୁକୁ ମାରିପାରିବେ । ଆଉ ବା କଅଣ ଦରକାର ? ଏହା ଛଡ଼ା ତାଙ୍କର ଆଉ ଗୋଟିଏ ଜିନିଷ ଥିଲା, ପାଦରେ ଥିଲା ହଳେ ଜୋତା । ଏ ଯୋଡ଼ିକ ତାଙ୍କ ବାପାଙ୍କର ଥିଲା । ଜୋତା ଉପରେ ଅତି ସୁନ୍ଦର କାରୁକାର୍ଯ୍ୟ ହୋଇଥିଲା । ଜାସନ ଏହି ଜୋତା ପିନ୍ଧି ବୁଲିଥାନ୍ତି । ଲୋକେ ତାଙ୍କ ଚେହେରା ଆଉ ଏ ଜୋତା ଦେଖି ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ । ଭାବୁଥିଲେ ଏ ବୀର ଜଣକ କିଏ ?

ଜାସନ କାହାକୁ ଖାତିର ନକରି ବୁଲିଥାନ୍ତି । କେତେ କୋଶ ବାଟ ଯିବାପରେ ଗୋଟାଏ ନଈ ପଡ଼ିଲା । ସେଥିରେ ପ୍ରବଳ ସୁଅ ବୋହୁଥାଏ । ଜାସନ ଭାବିଲେ—ଡଙ୍ଗାତ ନାହିଁ ନଦୀକୁ ପାରହୋଇ ଯିବେ କିପରି ? ଏଇ ସମୟରେ ପଛରୁ କିଏ ଜଣେ କହିଲା, "ଟୋକାଟା କିପରି ନଈ ପାରିହେବ ବୋଲି ଭାବିହେଉଛୁ । ଜୋତାହଳକ ଓଦାହୋଇଯିବ ବୋଲି ଡରୁଛୁପରା !"

ଜାସନ ଆଶ୍ଚର୍ଯ୍ୟହୋଇ ପଛକୁ ବୁଲିପଡ଼ି ଦେଖନ୍ତେ ତାଙ୍କ ପାଖରେ ଗୋଟିଏ ବୁଢ଼ୀ ଛିଡ଼ାହୋଇଛି । ସେହି ବୁଢ଼ୀ ଏ କଥା କହିଥିଲି । ବୁଢ଼ୀ ଗୋଟିଏ ବାଡ଼ି ହାତରେ ଧରିଥିଲି । ସେ ବାଡ଼ି ଅଗରେ ଗୋଟିଏ କୋଇଲିର ଛବି । ବୁଢ଼ୀର ଚମ ଲୋଗ୍ତକୋଚ୍ତ ହୋଇଯାଇଥାଏ କିନ୍ତୁ ଆଖି ଦୁଇଟା ଖୁବ୍



ଉଜ୍ଜ୍ୱଳ ଦିଶୁଥାଏ । ବୁଢ଼ୀ ଆର ହାତରେ ଗୋଟିଏ ପାଚିଲି ଡାଳିମ୍ବ ଧରିଥିଲି । ସେ ଦିନେ ଡାଳିମ୍ବ ଫଳେନାହିଁ । ବୁଢ଼ୀ ଏହାକୁ ପାଇଲି କାହୁଁ ? ବୁଢ଼ୀପାଖକୁ ଲାଗି ଗୋଟାଏ ବଡ଼ ମୟୂର ଥିଲି । ଏ ବିଚିତ୍ର ବୁଢ଼ୀକି ଦେଖି ଓ ତାର କଥା

ଶୁଣି ଜାସନଙ୍କ ମନରେ ସନ୍ଦେହ ହେଲା । ବୁଢ଼ୀ ପଚାରିଲା, "ଜାସନ, ତୁ କୁଆଡ଼େ ଯାଉଛୁ ?"

ଏହା ଶୁଣିଲାପରେ ଜାସନର ସନ୍ଦେହ ଆହୁରି ବଢ଼ିଗଲା । ତାର ନାଆଁ ଯେ ଜାସନ, ବୁଢ଼ୀ ଏହା ଜାଣିଲା କିପରି ? ସେ ଭାବିଲେ—"ବୁଢ଼ୀ ଯିଏ ହେଉ ପଛକେ ତାକୁ ନିଶ୍ଚୟ ଆଗତ ଭବିଷ୍ୟ ଜଣା ।"

ଜାସନ ଉତ୍ତର କଲେ, ମୁଁ ଆୟୁଲକସ୍ ରାଜ୍ୟକୁ ଯାଉଛି । ମୋଠି ପେଲିଅସ୍ ରାଜାହୋଇ ବସିଛି । ସେ ରାଜ୍ୟ ଥିଲା ମୋ ବାପାଙ୍କର । ମୁଁ ଯାଉଛି, ତାକୁ ତଡ଼ି ବାପାଙ୍କ ରାଜ୍ୟରେ ପୁଣି ରାଜା ହେବି ।"

ବୁଢ଼ୀ କହିଲା, "ଏଥିପାଇଁ ଏତେ ତରତର ହେଉଛୁ କାହିଁକି ? ମତେ ତୋ ପିଠିରେ ବସାଇ ନଈ ଆରପାରିକି ନେଇଯା ।" ଜାସନ କହିଲେ— "ମୁଁ ତୁମକୁ ନେଇ ନଈ ପାରିହୋଇପାରିଲେ ଆନନ୍ଦରେ ତାହା କରନ୍ତି, କିନ୍ତୁ ଦେଖ, ନଈର ସୁଅ କେଡ଼େ ପ୍ରବଳ । ଏଥିରେ ପଶିଯିବାକୁ କିଏ ବା ସାହସ କରିବ ? ତୁମକୁ ନେଇ ଯାଉ ଯାଉ ଗୋଡ଼ ଖସିଗଲେ ଦୁହେଁଯାକ ମରିବା ।"

ବୁଢ଼ୀ କହିଉଠିଲା, "ଏଇ ସାମାନ୍ୟ କାମପାଇଁ ତ ତୋର ସାହସ ନାହିଁ— ତୁ କିପରି ପେଲିଅସ୍‌କୁ ସିଂହାସନରୁ ତଡ଼ିବୁ ବୋଲି ସାହସ କରୁଛୁ ?"

ବୁଢ଼ୀର କଥା ଜାସନଙ୍କୁ ବାଧିଲା । ବୁଢ଼ୀ ଯାହା କହିଲା ତା' ମିଛ ନୁହେଁ । ସେ ବୁଢ଼ୀ କଥାରେ ଲଜ୍ଜିତହୋଇ କହିଲେ, "ମାଆ ତୁମ କଥା ସତ । ଆସ, ମୋ ପିଠିରେ ଲଉ ହୋଇପଡ଼ । ମୁଁ ତୁମକୁ ନେଇ ନଈ ପାରିହେବାକୁ ଚେଷ୍ଟା କରିବି ।" ବୁଢ଼ୀ କହିଲା, "ପୁଅ, ଈଶ୍ୱର ତୋର ମଙ୍ଗଳ କରିବେ । ତୁ କିଛି ଭୟକରନା— ଆମେ ନଈ ପାରହୋଇଯିବା ।"

ବୁଢ଼ୀ ଜାସନଙ୍କର ବେକକୁ ଧରି ତାଙ୍କ ପିଠିରେ ନାଉଁହେଲା । ମୟୂର ଉଡ଼ିଯାଇ ବୁଢ଼ୀ କାନ୍ଧରେ ବସିଲା । ଜାସନ ଦୁଇ ହାତରେ ଗୋଟିଏ ଲେଖାଏଁ ବର୍ଛା ଧରି ନଈରେ ପଶି ଚାଲିଲେ । ଜାସନ ଧୀରେ ଧୀରେ ଚାଲୁଥାନ୍ତି । ସୁଅରେ ପାଦ ଟଳମଳ ହେଉଥାଏ । ଏଇ ସମୟରେ ତାଙ୍କ ଗୋଡ଼ ଦୁଇଟା ପଥର ସନ୍ଧିରେ ଲାଗିଗଲା । ସେ ଗୋଡ଼ ବାହାରକରି ଆଣିବାକୁ ଟାଣିଓଟାରି ହେଲେ । ଗୋଡ଼ ଦୁଇଟା ବାହାରିଆସିଲା, କିନ୍ତୁ ଗୋଟାଏ ଗୋଡ଼ର ଜୋତାପଟିକ କୁଆଡ଼େ ଖସିଗଲା । ସେ ପାଟିକଲେ, "ଓଃ, ଖସିଗଲା, ଗଲା !"

ବୁଢ଼ୀ ପଚାରିଲା, "କଣ ହେଲାରେ ବାପ ?"

ଜାସନ ଉତ୍ତର କଲେ, "ମୋର ପଟେ ଜୋତା କୁଆଡ଼େ ଖସିଗଲା । ଏବେ ପଟେ ଜୋତା ପିନ୍ଧି ପେଲିଅସ୍ ପାଖକୁ ଗଲେ ଲୋକେ ଦେଖି କଅଣ କହିବେ ?"

ଏହା ଶୁଣି ବୁଢ଼ୀ କହିଲା, "ସେଥିପାଇଁ ଚିନ୍ତା କରୁଛୁ କାହିଁକି ? ଜୋତା ପଟେ ହଜିଯିବା ତୋର ଭାଗ୍ୟର କଥା । ଏବେ ମୁଁ ତୋତେ ଠିକ୍ ଚିହ୍ନିଲି । ତୋର କଥା ମତେ ଶାଗୁଆନ ଗଛ କହିଥିଲା ।"

ବୁଢ଼ୀ ଯାହା କହିଲା ସେ କଥା ଭାବିବାପାଇଁ ଜାସନଙ୍କର ବେଳ ନଥିଲା । ସେ କଷ୍ଟେମଷ୍ଟେ ନଦୀ ଆରକୂଳରେ ପହଞ୍ଚିଗଲେ । ତା'ପରେ ଜାସନ ଅତି ଧୀରେ ବୁଢ଼ୀକୁ ଘାସଉପରେ ଓହ୍ଲାଇଦେଲେ । ବୁଢ଼ୀ ତାଙ୍କୁ ଆଶୀର୍ବାଦ କରି କହିଲା, "ତୁ କେତେ କଷ୍ଟ କରି ମତେ ଆଣିଲୁ । ଈଶ୍ୱର ତୋର ମଙ୍ଗଳ କରିବେ । ପଟେ ଜୋତା ହଜିଗଲା ବୋଲି ମନଦୁଃଖ କରିବୁ ନାହିଁ । ତୋର ଏଇ ଖାଲି ଗୋଡ଼ଟାକୁ ଦେଖି ପେଲିଅସ୍ ଭୟରେ କମ୍ପି ଉଠିବ । ଏବେ ତୋ ବାଟରେ ଯାଅ । ମୁଁ ଆଶୀର୍ବାଦ କରୁଛି— ତୁ ରଜାହୋଇ ସିଂହାସନରେ ବସିବୁ ।" ବୁଢ଼ୀ ହସି ହସି ଏତିକି କହି ଚ୍ଛୋଟେଇ ଚ୍ଛୋଟେଇ ଚାଲିଗଲା ।

କେତେଦିନ ଚାଲି ଚାଲି ଜାସନ ଆୟୋଲକସ୍ ରାଜ୍ୟରେ ପହଞ୍ଚିଲେ । ସେ ସହରରେ ପଶିଲାକ୍ଷଣି ଲୋକମାନେ ତାଙ୍କୁ ଦେଖି କୁହାକୁହି ହେଲେ, "ଦେଖିଲ, ଏତେ ଦିନ ପରେ ସେହି ଲୋକ ଆସିଛି । ତା' ପାଦରେ ପଟେ ଜୋତା ଅଛି ଟି ! ରାଜା ତାକୁ ଦେଖିଲେ କଅଣ କହିବେ ?" ଜାସନ ଲୋକମାନଙ୍କର ଏଭଳି କଥାବାର୍ତ୍ତା ଶୁଣିଲେ, ମାତ୍ର ଏଥିରୁ କିଛି ବୁଝିପାରିଲେନାହିଁ ।

ଏ ଖବର ରାଜା ଜାଣିଲେ । ଅନେକ ବର୍ଷ ତଳେ ଜଣେ ଲୋକ ଭବିଷ୍ୟତ୍‌ବାଣୀ କରିଥିଲେ ଯେ, ପେଲିଅସ୍ ଦିନେ ରାଜ୍ୟ ଛାଡ଼ିବାକୁ ବାଧ୍ୟ ହେବେ । ପାଦରେ ପଟେ ଜୋତା ପିନ୍ଧିଥିବା ଜଣେ ଯୁବକ ତାଙ୍କୁ ସିଂହାସନରୁ ଛଡ଼ାଇ ରାଜା ହେବ । ଏବେ ଜାସନଙ୍କୁ ପଟେ ଜୋତା ପିନ୍ଧିଥିବା ଦେଖି ତାଙ୍କ ମନରେ ଭୟହୋଇଗଲା, କିନ୍ତୁ ବାହାରେ ଭୟର କୌଣସି ଲକ୍ଷଣ ନ ଦେଖାଇ ସେ ଜାସନଙ୍କୁ କହିଲେ, "ତୁମେ ମୋ ରାଜ୍ୟକୁ ଆସିଥିବାରୁ ମୁଁ ଆନନ୍ଦିତ । ତୁମର ନାଆଁ କଅଣ ? କେଉଁଠାରୁ ଆସିଲ ?"

ଯୁବକ ଉତ୍ତର କଲେ, "ମୋର ନାମ ଜାସନ । ମୁଁ ଗୁରୁ ଚିରନଙ୍କ ପାଖେ ରହି ପଢୁଥିଲି । ପଢ଼ାସାରି ଆସିଛି ।"

ରାଜା ମନକଥା ମନରେ ରଖି କହିଲେ, "ମୁଁ ଜାଣେ ଚିରନଙ୍କ ଛାତ୍ରମାନେ ଖୁବ୍ ବୁଦ୍ଧିମାନ୍ । ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦେବ ।" ରାଜା ପଚାରିଲେ, "ଆଚ୍ଛା କୁହତ, ସବୁଠାରୁ କଷ୍ଟ କାମ କ'ଣ ?"

ଜାସନ ଉତ୍ତର ଦେଲେ—ମୋ ବିଚାରରେ ସୁନାର ଲୋମ ଆଣିବା ସବୁଠୁ ବଳି କଷ୍ଟକାମ ।

ଜାସନ 'ସୁନାର ଲୋମ' କଥା କହିବାର ଗୋଟିଏ କାରଣ ଥିଲା । ଏଭଳି କଠିନ କାମ ସେତେବେଳେ ଆଉକିଛି ଥିବାର ଜଣାନଥିଲା । ଏହାକୁ ଆଣିବାକୁ ହେଲେ ଭୀଷଣ ସମୁଦ୍ର ପାରହେବାକୁ ପଡ଼ିବ । ଏଇ ସୁନାର ଲୋମ ଆଣିବାକୁ ଯେତେ ବୀର ଯାଇଥିଲେ, କେହି ଜଣେହେଲେ ପ୍ରାଣଘେନି ଫେରିନଥିଲେ ।

ରାଜା ପେଲିଅସ୍ ଜାସନଙ୍କୁ କହିଲେ, "ମୁଁ ଦେଖୁଛି ଚିରନଙ୍କ ପାଖରେ ରହି ତୁମେ ଖୁବ୍ ଜ୍ଞାନ ଅର୍ଜିଛ । ଏବେ ମୋର ହୁକୁମ—ତୁମେ ଯାଇ ମୋ ପାଇଁ ସୁନାର ଲୋମ ନେଇଆସିବ ।"

ଜାସନ ଏଥିରେ ଡରିନଯାଇ କହିଲେ, "ମହାରାଜ, ମୁଁ ଯିବାପାଇଁ ପ୍ରସ୍ତୁତ ଅଛି, କିନ୍ତୁ ମୁଁ ଯେବେ ସୁନାର ଲୋମ ନେଇ ଫେରିଆସେ ତେବେ ଆପଣଙ୍କର ଏ ରାଜ୍ୟ ଓ ସିଂହାସନ ମୁଁ ଅଧିକାର କରିବ ।"

ରାଜା ଭାବିଲେ—ସୁନାର ଲୋମ ଆଣିବାକୁ ଯାଇ ତ କେହି ଜଣେସୁଦ୍ଧା ଫେରିନାହାନ୍ତି—ଜାସନ ମଧ୍ୟ ସେମାନଙ୍କଭଳି ମରିବ । ତେବେ ଚିନ୍ତା କଅଣ ? ଏହାପରି ବିଚାରି ସେ କହିଲେ, "ବେଶ୍ ଭଲକଥା । ତୁମେ ଯେବେ ଫେରିଆସିବ ମୁଁ ରାଜଗାଦି ଛାଡ଼ିଦେବି ।"

ଜାସନ ସୁନାର ଲୋମ ଆଣିବେବୋଲି ପ୍ରତିଜ୍ଞାକରି ବାହାରିଲେ । ତାଙ୍କର ମନେପଡ଼ିଲା, ଆସିଲାବେଳେ ବୁଢ଼ୀ କହୁଥିଲା ଯେ ଶାଗୁଆନଗଛଠାରୁ ସେ ତା କଥା ଶୁଣିଥିଲା । ତେବେ ଆଗେ ସେଇ ଶାଗୁଆନ ଗଛକୁ ପଚାରିବ । ଯେଉଁ ଗଛ ମଣିଷପରି କଥା କହିପାରେ ତାର ନିଶ୍ଚୟ ଅଦ୍ଭୁତ ଗୁଣ ଥିବ । ତା' ଠାରୁ ସାହାଯ୍ୟ ମିଳିବ ।

ଅନେକ ଅଞ୍ଚଳ ବୁଲି ବୁଲି ଜାସନ ଗୋଟିଏ ପ୍ରକାଣ୍ଡ ବଣରେ ପହଞ୍ଚିଲେ । ସେଇ ବଣମଝିରେ ଏକ ବିଶାଳ ଶାଗୁଆନ ଗଛ । ତାର ଡାଳଗୁଡ଼ାକ ବହୁ

ଦୂରଯାଏ ଲମ୍ବିଯାଇଛି । ଜାସନ ସେଇ ଗଛମୂଳେ ଛିଡ଼ାହୋଇ ଉପରକୁ ଗୁହିଁ କହିଲେ, "ହେ ବୃକ୍ଷଦେବତା, ମୁଁ ସୁନାର ଲୋମ ଆଣିବାକୁ ବାହାରିଛି । ମୋତେ କଣ କରିବାକୁ ହେବ କହିଦିଅନ୍ତୁ ।" ଗଛର ଗଣ୍ଡିପାଖରୁ ଶୁଣାଗଲା, "ଜାସନ, ତୁମେ ଆର୍ଗସ୍ ପାଖକୁ ଯାଅ । ତାକୁ କହିବ ସେ ତୁମପାଇଁ ଗୋଟିଏ ବଡ଼ ଜାହାଜ ତିଆରି କରିଦେବେ । ସେଥିରେ ପଚୃଶଟି ଆହୁଲା ଥିବ । ତାପରେ ଯାହା କରିବାର କଥା ମୁଁ ପରେ କହିବି ।"

ଜାସନ ସହରକୁ ଫେରିଯାଇ ଆର୍ଗସ୍‌ଙ୍କୁ ଭେଟିଲେ । ଆର୍ଗସ୍ ଭଲ ଜାହାଜ ତିଆରିକରି ଜାଣନ୍ତି । ଜାସନ ତାଙ୍କୁ ଜାହାଜର ବିବରଦେଲେ । କିଛି ଦିନରେ ଆର୍ଗସ୍ ଓ ତାଙ୍କ କାରିଗରମାନେ ଜାସନଙ୍କ ବିବରଦ ଅନୁସାରେ ଗୋଟିଏ ଜାହାଜ ତିଆରି କରିଦେଲେ । ସେଥିରେ ପଚୃଶଟି ଆହୁଲା ଥିଲା । ଜାହାଜ ଠିକ୍ ହୋଇଯିବାରୁ ଜାସନ ପୁଣି ଶାଗୁଆନ ଗଛ ପାଖକୁ ଯାଇ ପଚାରିଲେ, "ଜାହାଜ ହୋଇଗଲା, ଏବେ ମୁଁ କଅଣ କରିବି ?"

ଏଥର ଗଛର ଗୋଟିଏ ବଡ଼ ଡାଳ କହିଲା, "ମୋତେ କାଟିନେଇ ମୋ କାଠରେ ଗୋଟିଏ ମୂର୍ତ୍ତି ତିଆରିକରାଅ । ତାକୁ ଜାହାଜର ଆଗ ମୁଣ୍ଡରେ ଖଞ୍ଜିଦେବ ।"

ସେକାଳରେ ଜାହାଜର ଆଗମୁଣ୍ଡରେ ଗୋଟିଏ କାଠର ମୂର୍ତ୍ତି ଖଞ୍ଜା ଯାଉଥିଲା । ଲୋକଙ୍କର ବିଶ୍ବାସ ଥିଲା, ଏଇ ମୂର୍ତ୍ତିରେ ଦେବତା ରହି ଜାହାଜକୁ ଚଳାନ୍ତି ଓ ବିପଦରୁ ରକ୍ଷାକରନ୍ତି । ଜାସନ ଗଛର ଡାଳଟିକୁ କଟାଇ ଜଣେ କାରିଗରକୁ ଦେଇ କହିଲେ, "ଏଥିରେ ମୋ ଜାହାଜପାଇଁ ଗୋଟିଏ ମୂର୍ତ୍ତି କରିଦିଅ ।" କାରିଗର କାମରେ ଲାଗିଲା । ତାକୁ ଜଣାପଡ଼ିଲା, ସତେଅବା ସେ ମୂର୍ତ୍ତି ଗଢୁନାହିଁ, କିଏ ଜଣେ ତା ହାତକୁ ଚଳାଇ ମୂର୍ତ୍ତି ଗଢୁଛି । କାମ ସରିବାରୁ ଦେଖାଗଲା, ଗୋଟିଏ ସୁନ୍ଦର ନାରୀ ମୂର୍ତ୍ତି ହୋଇଛି । ମୂର୍ତ୍ତିର ଡାହାଣ ହାତଟି ଆଗକୁ ଲମ୍ବିରହିଛି । ଜାସନ ଏହି ସୁନ୍ଦର ମୂର୍ତ୍ତିଟିକୁ ଦେଖି ଖୁବ୍ ଆନନ୍ଦିତ ହେଲେ । ଏଥିନ ଦେବୀଙ୍କର ମୂର୍ତ୍ତି ଠିକ୍ ଏହିପରି । ସେ ଭାବିଲେ ଯେ ଏହି ମୂର୍ତ୍ତିରେ ଏଥିନ ଦେବୀ ବିଜେ କରିଛନ୍ତି । ସେ ଏହି ମୂର୍ତ୍ତିଟି ନେଇ ଜାହାଜ ଆଗମୁଣ୍ଡରେ ଖଞ୍ଜିଦେଲେ ।

ଜାହାଜ ତ ପ୍ରସ୍ତୁତ ହୋଇଗଲା— ଏବେ ଜାସନ କଅଣ କରିବେ ? ଶାଗୁଆନ ଗଛର ପରାମର୍ଶ ମାଗିବାକୁ ସେ ବାହାରିଛନ୍ତି, ଏହିସମୟରେ

ଜାହାଜର ସେହି ମୂର୍ତ୍ତି କହିଲେ, "ଆଉ ଗଛପାଖକୁ ଯିବା ଦରକାର ନାହିଁ । ତୁମର ଯାହା ଜାଣିବାର କଥା ଏଣିକି ମୋତେ ପଚାରିବ ।"

ମୂର୍ତ୍ତି କଥାକହିବାର ଶୁଣି ଜାସନ ଆହୁରି ଆଶ୍ଚର୍ଯ୍ୟ ହୋଇଗଲେ । ଗଛ କଥାକହୁଥିଲା, ଏବେ ସେ ଗଛର କାଠରେ ତିଆରି ହୋଇଥିବା ମୂର୍ତ୍ତି ମଧ୍ଯ କଥା କହୁଛି । ଏଥିରେ କିଏ ଅବା ଆଶ୍ଚର୍ଯ୍ୟ ହେବନାହିଁ ? ଜାସନ ସେହି ମୂର୍ତ୍ତିକୁ ପଚାରିଲେ, "ଜାହାଜରେ ପଚାଶଟି ଆହୁଲା ଲଗିଛି । ଏହାକୁ ଚଳାଇବା ପାଇଁ ପଚାଶଜଣ ନାଉରୀ ଦରକାର । ଏତେ ନାଉରୀ ମୁଁ କାହୁଁ ପାଇବି ?" ମୂର୍ତ୍ତିଟି କହିଲା, "ସେଥିପାଇଁ ଚିନ୍ତାକରିବାର କାରଣ ନାହିଁ । ତୁମେ ଯାଇ ଗ୍ରୀସ୍‌ର ବୀରମାନଙ୍କୁ ଡାକ । ନାଉରୀର ଅଭାବ ରହିବ ନାହିଁ ।"

ଜାସନ ଗ୍ରୀସ୍‌ର ବଡ଼ ବଡ଼ ସହରକୁ ଲୋକପଠାଇ ଜଣାଇଦେଲେ ଯେ ସେ ସୁନାର ଲୋମ ଆଣିବାକୁ ଯାଉଛନ୍ତି । ସେ ଏହି କାର୍ଯ୍ୟରେ ପଚାଶଜଣ ସାହସୀ ବୀର ଚାହାନ୍ତି । ସେମାନଙ୍କୁ ଜାହାଜ ଚଳାଇ ଦୂରଦେଶକୁ ଯିବାକୁ ପଡ଼ିବ । ଏ ଖବର ଶୁଣି ଗ୍ରୀସ୍‌ର ବଡ଼ ବଡ଼ ସହରରୁ ବୀରମାନେ ଆସି ତାଙ୍କପାଖେ ପହଞ୍ଚିଗଲେ । ସେମାନଙ୍କ ଭିତରୁ ଅନେକେ ଏଥିପୂର୍ବରୁ ରାକ୍ଷସମାନଙ୍କ ସଙ୍ଗେ ଯୁଦ୍ଧକରି ସୁନାମ ଅର୍ଜିଥିଲେ । ସମସ୍ତଙ୍କ ମନରେ ଅପୂର୍ବ ଉତ୍ସାହ । ଜାସନଙ୍କ ସଙ୍ଗରେ ସୁନାର ଲୋମ ଆଣିବାକୁ ଯିବା କଅଣ କମ୍ ଭାଗ୍ୟର କଥା !

ବୀରମାନେ ଆହୁଲାଧରି ଜାହାଜ ଚଳାଇଲେ । ଏତେ ବଡ଼ ଜାହାଜ । ତଥାପି ଜାହାଜ ସମୁଦ୍ର ଉପରେ ଉଡ଼ିଗଲାପରି ଚାଲୁଥାଏ । ସେମାନେ କୂଳ ଛାଡ଼ିଲାବେଳେ ଲୋକେ ସେମାନଙ୍କର ଶୁଭମନାସିଲେ । ସେମାନଙ୍କର ଜୟଧ୍ୱନି କଲେ । କେବଳ ରାଜା ପେଲିଅସ୍‌ଙ୍କ ମନ ଖରାପ । ତାଙ୍କ ମନ ରାଗରେ ଜଳି ଉଠୁଥାଏ । ସେ ଗୋଟାଏ ପାହାଡ଼ ଉପରୁ ଲୁଚାହୋଇ ଜାହାଜ କୂଳଛାଡ଼ିବାର ଦେଖିଲେ । ଲୋକମାନଙ୍କର ଜୟଧ୍ୱନି ଶୁଣି ସେ ବିରକ୍ତ ହେଉଥାନ୍ତି । ଭାବୁଥାନ୍ତି ଜାହାଜଟା ଝଡ଼ତୋଫାନରେ ଖଣ୍ଡ ଖଣ୍ଡ ହୋଇଗଲେ ଭଲହୁଅନ୍ତା ।

ଜାହାଜ ଚଳାଉଥିବାବେଳେ ଜାସନଙ୍କ ସଙ୍ଗୀମାନେ କେବଳ ସୁନାର ଲୋମ ବିଷୟରେ ଗପ କରୁଥାନ୍ତି । ସମସ୍ତେ ଏହିକଥା ଶୁଣିଥିଲେ, କିନ୍ତୁ କେହି ଏହାକୁ ଦେଖି ନଥିଲେ । ଲୋମ ସିନା ମେଣ୍ଢାଦେହରେ ଥାଏ—ସୁନାର ଲୋମ ପୁଣି କଅଣ ?

ସୁନାର ଲୋମ କଅଣ ଏଠାରେ କହିରଖିବା ଦରକାର । ଅତି ପୂର୍ବ କାଳରେ ଗୋଟିଏ ମେଣ୍ଢା ଥିଲା । ଥରେ ସେ ଦୁଇଟି ପିଲାଙ୍କୁ ବିପଦରୁ ରକ୍ଷା କରିବାପାଇଁ ପ୍ରାଣପଣ ଚେଷ୍ଟା କରିଥିଲା । ପିଲା ଦିଓଟି ହେଉଛନ୍ତି ଭାଇ ଭଉଣୀ । ସେ ଏହି ପିଲା ଦିଓଟିଙ୍କୁ ପିଠିରେ ବସାଇ କେତେ ରାଜ୍ୟ, କେତେ ବଣ ପାହାଡ଼ ବୁଲିଲା । ପିଲାଦୁଇଟି ରକ୍ଷାପାଇଗଲେ, ମାତ୍ର ମେଣ୍ଢାଟି ହାଲିଆହୋଇ ପଡ଼ି ମରିଗଲା । ସାମାନ୍ୟ ମେଣ୍ଢାଟିର ଏହି କାର୍ଯ୍ୟରେ ଦେବତାମାନେ ଖୁସିହୋଇ ତାର ଚମଡ଼ାକୁ ସୁନାକରିଦେଲେ । ତା ଦେହରୁ ଏକପ୍ରକାର ଜ୍ୟୋତି ବାହାରିଲା । ସମଗ୍ର ପୃଥିବୀରେ ଏହାଭଳି ଅପୂର୍ବ ଦ୍ରବ୍ୟ ଆଉକେଉଁ ନଥିଲା । ଗୋଟିଏ ଗଛଡାଳରେ ଏହି ବିଚିତ୍ର ଚମଡ଼ାଟି ଓହଳିଥାଏ । ତାର ଲୋମର ଜ୍ୟୋତିରେ ସେ ଅଞ୍ଚଳଯାକ ଆଲୁଅ ହୋଇଯାଉଥାଏ । ଏହାକୁ କାଳେ କିଏ ନେଇଯିବ ବୋଲି ଗୋଟାଏ ଦୈତ୍ୟ ଗଛମୂଳେ ଏହାକୁ ଜଗି ରହିଥାଏ । କେତେ ବୀର, କେତେ ରାଜାଙ୍କର ଏହି ସୁନା ଲୋମ ଉପରେ ଲୋଭ । କେତେ ଯେ ବୀର ଏହାକୁ ନେବାପାଇଁ ଚେଷ୍ଟାକରି ପ୍ରାଣହରାଇଥିଲେ ତାର ସଂଖ୍ୟା ନାହିଁ । ଏବେ ଜାସନ ଓ ତାଙ୍କ ସଙ୍ଗୀମାନେ ଏହି ସୁନାର ଲୋମ ଆଣିବେ ବୋଲି ବାହାରିଥିଲେ ।

ସେମାନଙ୍କୁ ବାଟରେ ଅନେକ ବିପଦର ସମ୍ମୁଖୀନ ହେବାକୁ ପଡ଼ିଥିଲା । କେତେ ଅସୁର ମାରିବାକୁ ହୋଇଥିଲା । ଯାହାହେଉ ସେମାନେ ଏସବୁ ବିପଦ ପାରହୋଇ ସୁନା ଲୋମଥିବା ଦେଶରେ ପହଞ୍ଚିଲେ । ଏ ରାଜ୍ୟର ରାଜା ଥିଲେ ଏଇଟିସ୍ । ଯେଉଁ ସାଇର୍ସର କଥା ତୁମେ ଆଗରୁ ପଢ଼ିଚ, ସେ ହେଉଛି ଏହି ଏଇଟିସ୍‌ଙ୍କର ଭଉଣୀ । ଭଉଣୀପରି ଭାଇ ବି ବଡ଼ ନିଷ୍ଠୁର ଥିଲେ । ଲୋକଙ୍କର କଷ୍ଟ ଦେଖିଲେ ସେ ଆନନ୍ଦ ପାଉଥିଲେ । ପୁଣି ତାଙ୍କର ଇଚ୍ଛା, ସୁନାର ଲୋମ ସେ ନିଜେ ରଖିବେ । ଜାସନଙ୍କୁ ଦେଖି ରାଜା ଏଇଟିସ୍ କହିଲେ, "ତୁମେ ସୁନା ଲୋମ ନେବ ବୋଲି ଆସିଛ ସତ, କିନ୍ତୁ ସେଠାକୁ ଯିବା ଆଗରୁ ତୁମ ବଳ ବୁଦ୍ଧିର ପରୀକ୍ଷା ଦେବାକୁ ହେବ । ମୋର ଯୋଡ଼ିଏ ଷଣ୍ଢ ଅଛନ୍ତି । ସେ ଯୋଡ଼ିକୁ ସ୍ୱର୍ଗର କାରିଗର ଭଲକାନ୍ ତିଆରିକରି ମୋତେ ଦେଇଛନ୍ତି । ତାଙ୍କର ଦେହ ପିତ୍ତଳର ଓ ପେଟ ଭିତରେ ଚୁଲିପରି ସବୁବେଳେ ନିଆଁ ଜଳୁଥାଏ । ନିଶ୍ୱାସ ନେଲାବେଳେ ତାଙ୍କ ନାକ ଓ ପାଟିରୁ ନିଆଁ ବାହାରୁଥାଏ । କେହି ସେମାନଙ୍କ ପାଖକୁ ଗଲେ ସେହି ନିଆଁରେ ପୋଡ଼ି ପାଉଁଶ ହୋଇଯିବ ।

ଆଗେ ସେ ଷଣ୍ଢ ଦୁଇଟାକୁ ଆୟତ୍ତ କରିବାକୁ ହେବ । ତା'ପରେ ସେ ଦୁହିଁଙ୍କୁ ଲଙ୍ଗଳରେ ଯୋଚି ସହରମୁଣ୍ଡରେ ଥିବା ପଡ଼ିଆ ଚାଷକରିବ । ଜାସନ ଏ ପ୍ରସ୍ତାବ ଗ୍ରହଣ କଲେ ।

ଏଇଟିସ୍ ମନେ ମନେ ଭାବିଲେ, "ପିଲା ମନେ ମନେ ଖୁସିହେଉଛି । ଆଗ ମୋ ଷଣ୍ଢ ହାବୁଡ଼େ ପଡ଼ିଯାଉ, ସେତେବେଳେ ମଜା ବାହାରିଯିବ ।" ତାହାପରେ ଜାସନଙ୍କୁ ଶୁଣାଇ କହିଲେ, "ବେଶ୍, କାଲିସକାଳେ ଦେଖିବା ତୁମେ କିପରି ଚାଷ କରିପାରିଥିବ ।"

ରାଜା ଓ ଜାସନଙ୍କ ଭିତରେ କଥାବାର୍ତ୍ତା ଚାଲିଥିବାବେଳେ ରାଜାଙ୍କ ସୁନ୍ଦରୀ ଝିଅ ମିଡ଼ିଆ ତାଙ୍କର ସିଂହାସନ ପଛରେ ଛିଡ଼ାହୋଇ ସବୁ ଶୁଣୁଥିଲା । ଜାସନ ରାଜାଙ୍କ ପାଖରୁ ଚାଲିଗଲାପରେ ସେ ତାଙ୍କୁ ଭେଟି କହିଲା, "ଜାସନ, ମୋଠାରେ ତୁମର ବିଶ୍ୱାସ ଥିଲେ ତୁମେ ମୋ କଥା ଅନୁସାରେ କାମ କର । ଷଣ୍ଢକୁ କିପରି ଆୟତ୍ତ କରିହେବ ସେ ଉପାୟ ମୁଁ ବତାଇଦେବି ।"

ଜାସନ ରାଜକନ୍ୟାଙ୍କୁ ଧନ୍ୟବାଦ୍ ଦେଇ କହିଲେ, "ତୁମର ଏ ସାହାଯ୍ୟ ପାଇଁ ମୁଁ ଜୀବନସାରା ଋଣୀ ରହିବି । ତୁମେ ଖୁବ୍ ବୁଦ୍ଧିମତୀ । ତୁମେ କିଛି ଗୁଣିବିଦ୍ୟା ଜାଣ କି ?"

ମିଡ଼ିଆ କହିଲା, "ହିଁ ଜାଣେ । ମୋର ପିଉସୀ ସାର୍ସି ସେ ବିଦ୍ୟାରେ ଧୁରନ୍ଧର । ତାଙ୍କଠାରୁ ମୁଁ କିଛି ଶିଖିଛି । ତୁମର ଯଦି ପ୍ରକୃତରେ ସାହସ ଥାଏ, ତେବେ ମୁଁ ତୁମକୁ ସାହାଯ୍ୟ କରିବି । ମୋ ବାପାଙ୍କ ଷଣ୍ଢର ନିଃଶ୍ୱାସରେ ଯେ କେହି ପୋଡ଼ିଯିବ । କିନ୍ତୁ ମୁଁ ତୁମକୁ ଗୋଟିଏ ମନ୍ତ୍ରିତ ତେଲ ଦେବି । ଦେହରେ ତାହା ଲଗାଇଲେ ତୁମ ଦେହ ଷଣ୍ଢର ନିଃଶ୍ୱାସ ନିଆଁରେ ପୋଡି ଯିବନାହିଁ ।" ଏହା କହି ସେ ଜାସନଙ୍କ ଦେହରେ କିଛି ତେଲ ବୋଳିଦେଇ କହିଲେ, "ରାତିଅଧରେ ନଅର ଆଗରେ ମୋସାଙ୍ଗେ ଦେଖାକରିବ । ତେଣିକି କଅଣ କରିବାକୁ ହେବ ମୁଁ କହିଦେବି ।" ଏହା କହି ମିଡ଼ିଆ ଚାଲିଗଲା ।

ରାତି ଅଧରେ ଜାସନ ନଅର ଆଗରେ ମିଡ଼ିଆକୁ ଭେଟିଲେ । ସହରର ଲୋକେ ସେତେବେଳକୁ ଶୋଇପଡ଼ିଥିଲେ । ଜାସନ ମିଡ଼ିଆର ପଛେ ପଛେ ଚାଲିଲେ । ଦୁହେଁଯାଇ ସହର ବାହାରେ ଥିବା ଏକ ବଡ଼ ପଡ଼ିଆରେ ପହଞ୍ଚିଲେ । ଏହି ପଡ଼ିଆକୁ ଚାଷ କରିବାକୁ ହେବ । ସେତେବେଳକୁ ଷଣ୍ଢ

ଦୁଇଟା ପଡ଼ଆର ଗୋଟାଏ ମୁଣ୍ଡରେ ଥାଆନ୍ତି । ମିଡ଼ଆ ରୂପ୍‌କରି ଜାସନଙ୍କ କାନପାଖରେ କହିଲ, "ଏଇ, ସେପଟେ ଷଣ୍ଢ ଦୁଇଟା ଅଛନ୍ତି । ସେମାନେ ତୁମକୁ ଦେଖିଲମାତ୍ରେ ପବନବେଗରେ ମାଡ଼ଆସିବେ । ତାଙ୍କର ନାକ ଓ ପାଟିରୁ ନିଆଁ ବାହାରିବା ଦେଖି ଡରପିବ ନାହିଁ ।"



ଜାସନ ମନ ଦୃଢ଼କରି ଖୁବ୍ ସାହସରେ କିଛିଦୂର ଆଗକୁ ଯାଇ ଦେଖିଲେ, ଗୋଟାଏ ଆଲୁଅ ଦିଶୁଛି । ଏହି ଆଲୁଅ ଷଣ୍ଢ ଦୁଇଟାଙ୍କର ନାକରୁ ବାହାରୁଥିଲା । ଜାସନ ଯେତିକି ଆଗକୁ ଗଲେ ନିଆଁ ସେତିକି ଉଜ୍ଜ୍ୱଳ ଦେଖାଗଲା । ସେ ଗୋଟାଏ ଗଛମୂଳରେ ଛିଡ଼ାହୋଇରହିଲେ । ଏହା ଭିତରେ ଷଣ୍ଢ ଦୁଇଟାର ନିଦ ଭାଙ୍ଗିଗଲା । ଦୁହିଁଙ୍କର ମୁହଁରୁ ଏତେ ନିଆଁ ବାହାରିଲା ଯେ ଗଛଟା ଜଳିଉଠିଲା, ପଡ଼ଆଯାକ ଦିନଭଳି ଆଲୁଅ ହୋଇଗଲା । ଜାସନଙ୍କୁ

ଦେଖିପାରି ଷଣ୍ଢ ଦୁଇଟା ତାଙ୍କ ପାଖକୁ ମାଡ଼ିଆସିଲେ । ମାତ୍ର ତୈଳ ଗୁଣରୁ ସେମାନଙ୍କ ନିଆଁରେ ତାଙ୍କର କଷ୍ଟ ହେଲନାହିଁ ।

ଜାସନ ଜଗିରହିଲେ । ଷଣ୍ଢ ଦୁଇଟା ତାଙ୍କ ପାଖକୁ ଶିଙ୍ଘ ଉଠାଇ ମାଡ଼ିଆସିଲାକ୍ଷଣି ସେ ଗୋଟାକର ଶିଙ୍ଘ ଓ ଆଉଗୋଟାକର ଲାଞ୍ଜ ଧରି ପକାଇଲେ । ଜାସନଙ୍କର ଏ ସାହସ ଦେଖି ଷଣ୍ଢ ଦୁଇଟାର ଭୟହୋଇଗଲା । ସେମାନେ ଆଉ ଜାସନଙ୍କୁ ମାରିବାକୁ ସାହସ କଲେନାହିଁ । ଜାସନ ଷଣ୍ଢ ଦୁଇଟିକୁ ନେଇ ଲଙ୍ଗଳରେ ଯୋଚିଦେଲେ । ଏଣିକି ସେମାନଙ୍କ ନାକରୁ କମ୍ୱା ମୁହଁରୁ ନିଆଁ ବାହାରିଲା ନାହିଁ । ପୋଷା ବଳଦପରି ଜାସନଙ୍କ କଥା ମାନି ଚିଆହେଲେ ।

ଜାସନ ସେ ଦୁଇ ଷଣ୍ଢକୁ ଜୁଆଳିରେ ବାନ୍ଧି ପଡ଼ିଆଟା ଚାଷ କଲେ । ସକାଳ ହେବାବେଳକୁ ସାରାପଡ଼ିଆଟି ଚାଷ ହୋଇଗଲା ।

ମିଡ଼ିଆ କହିଲା—"ଏଥର ରାଜାଙ୍କ ପାଖକୁ ଯାଇ ଜଣାଇଦିଅ ଯେ ତାଙ୍କ ହୁକୁମ ଅନୁସାରେ କାମ ହୋଇସାରିଛି ।"

ଜାସନ ରାଜାଙ୍କ ପାଖକୁ ଯାଇ ସେହିପରି କହିଲେ । କିନ୍ତୁ ରାଜା ଏଥିରେ ସନ୍ତୁଷ୍ଟ ନ ହୋଇ ବିରକ୍ତ ହୋଇଉଠିଲେ । ସେ କହିଲେ, "ତୁମେ ଏକୁଟିଆ ଏ କାମ କରିପାରିନଥାନ୍ତ । ମୋ ଝିଅ ମିଡ଼ିଆ ତାର ମନ୍ତ୍ରବଳରେ ତୁମକୁ ସାହାଯ୍ୟ କରିଛି । ତାହା ହୋଇ ନ ଥିଲେ ତୁମେ ଏତେବେଳକୁ ପାଉଁଶ ହୋଇସାରିଥାନ୍ତ । ମୁଁ ତୁମକୁ ମନାକରୁଛି, ସୁନାଲୋମ ଆଣିବାପାଇଁ ଆଉ ଚେଷ୍ଟା ନ କରି ପ୍ରାଣଧେନି ଚାଲିଯାଅ ।

ଏକଥା ଶୁଣି ଜାସନଙ୍କ ମନରେ ଯେତିକି ଦୁଃଖ ସେତିକି ରାଗ ହେଲା । ରାଜା ଯାହା କହିଲେ ଜାସନ ତାହା ମିଡ଼ିଆକୁ ଜଣାଇଲେ । ମିଡ଼ିଆ କହିଲା, "ବାପାଙ୍କର ଚରିତ୍ର ମୁଁ ଜାଣେ । ତୁମ ଜାହାଜରେ ନିଆଁ ଲଗାଇଦେଇ ତୁମକୁ ଓ ତୁମର ସାହସୀ ସଙ୍ଗୀମାନଙ୍କୁ ମାରିଦେବା ତାଙ୍କ ଇଚ୍ଛା । ତୁମେ ଅତି ଶୀଘ୍ର ଯାଇ ସୁନାର ଲୋମ ନେଇଆସ । ରାତି ନ ପାହୁଣୁ ଏ କାମ ଶେଷକରି ଭୋରରୁ ଜାହାଜ ଛାଡ଼ିଦିଅ ।"

ଅନ୍ଧାର ରାତି । ମିଡ଼ିଆ ଓ ଜାସନ ଦୁହେଁଯାକ ଗଛଲତା ଭିତରେ ଲୁଚି ଲୁଚି ଯାଇ ଗୋଟିଏ ତୋଟାରେ ପହଞ୍ଚିଲେ । ସବୁଆଡ଼େ ଅନ୍ଧାର ହେଲେହେଁ ତୋଟାଟି ଆଲୁଅରେ ଝଲମଲ ହେଉଥିଲା । ଗୋଟିଏ ଗଛ ଡାଳରେ ସୁନାର

ଲୋମ ଝୁଲୁ ଥିଲା । ତାହାର ତେଜରେ ତୋଟାସାରା ଆଲୁଅ ହୋଇଯାଇଥିଲା । ଜାସନ ଅଧୀରହୋଇ ସୁନାର ଲୋମ ଆଣିବାପାଇଁ ଧାଇଁଯାଉଥିଲେ, କିନ୍ତୁ ମିଡ଼ିଆ ତାଙ୍କୁ ଧରପକାଇ କହିଲା, "ଟିକଏ ଅପେକ୍ଷାକର । ଗଛମୂଳେ ଅସୁର ଜଗିଛି—କଣ ଭୁଲିଗଲ ? ରହ, ମୁଁ ତୁମ ସଙ୍ଗରେ ଯିବି ।" ଏହା କହି ସେ ଗୋଟିଏ ସୁନା ଫରୁଆ ଧରି ବାହାରିଲା । ଏହି ସମୟରେ ଗୋଟିଏ ହରିଣ ସେ ଗଛ ପାଖକୁ ଦଉଡ଼ିଗଲା । ମୁହୂର୍ତ୍ତକ ଭିତରେ ଗଛମୂଳର ସେ ରାକ୍ଷସଟା ମୁଣ୍ଡ ଲମ୍ବାଇ ସେ ହରିଣଟାକୁ ଗିଳିଦେଲା । ରାକ୍ଷସ ମୁହଁଟା ମେଲି କଲାବେଳେ ତାହା ଭିତରର ଫାଟକପରି ବଡ଼ଟ ଦେଖାଯାଉଥିଲା । ଏହା ଦେଖି ଜାସନଙ୍କର ରକ୍ତ ଯେମିତି ପାଣି ହୋଇଗଲା । ମନରେ ସାହସ ବାନ୍ଧି ସେ ରାକ୍ଷସକୁ ମାରିବାପାଇଁ ଖଣ୍ଡା ବାହାରିକଲେ ।

ମିଡ଼ିଆ ପୁଣି ଜାସନଙ୍କ କାନପାଖରେ କହିଲା, "ଏତେ ତରବର ହୁଅ ନାହିଁ—ଟିକଏ ଅପେକ୍ଷାକର ।" ବୋଧହୁଏ ଏଇ ଫୁସ୍ ଫୁସ୍ କଥାର ଶବ୍ଦ ରାକ୍ଷସ ଶୁଣିପାରିଲା । ସେ ପାଟି ମେଲାକରି ଭରଣ ହାତଯାଏ ତାର ମୁଣ୍ଡଟା ଲମ୍ବାଇଦେଲା । ସଙ୍ଗେ ସଙ୍ଗେ ମିଡ଼ିଆ ତାର ଫରୁଆରୁ ଗୁଡ଼ିଏ ବଟିକା କାଢ଼ି ତା ପାଟି ଭିତରକୁ ପକାଇଦେଲା । ଗୃହୁଁ ଗୃହୁଁ ରାକ୍ଷସଟା ଆଖି ବୁଜି ଶୋଇ-ପଡ଼ିଲା । ମିଡ଼ିଆ ଜାସନଙ୍କୁ ବୁଝାଇଦେଇ କହିଲା, "ଏହା ଏକପ୍ରକାର ନିଦ ଔଷଧ । ତାହା ଖାଇ ରାକ୍ଷସଟା ଶୋଇପଡ଼ିଛି । ଇଚ୍ଛାକରିଥିଲେ ମୁଁ ତାକୁ ଔଷଧଦେଇ ମାରିପାରିଥାନ୍ତି, କିନ୍ତୁ ବେଳେ ବେଳେ ଏଭଳି ରାକ୍ଷସମାନେ ବହୁତ କାମକରନ୍ତି । ତେଣୁ ତାକୁ ମାରିଲିନାହିଁ । ଏବେ ତୁମେ ଶୀଘ୍ର ଯାଇ ସୁନାର ଲୋମ ନେଇଆସ ।"

ଜାସନ ସୁନାର ଲୋମ ନେଇଆସି ଜାହାଜପାଖରେ ପହଞ୍ଚିଲେ । ସେତେବେଳକୁ ପୂର୍ବଦିଗରେ ସିନ୍ଦୂର ଫାଟିଆସୁଥିଲା । ଜାହାଜର ଆଗରେ ଥିବା ମୂର୍ତ୍ତି ଡାକିଲା, "ଜାସନ, ଶୀଘ୍ର ଜାହାଜ ଉପରକୁ ଉଠିଆସ ।" ଜାସନ ମିଡ଼ିଆକୁ ଧନ୍ୟବାଦ ଜଣାଇ ଜାହାଜରେ ବସିଲେ । ତାଙ୍କର ସଙ୍ଗୀମାନେ ସୁନାର ଲୋମ ଦେଖି ଆନନ୍ଦରେ ଜୟଧ୍ୱନି କଲେ । ବୀଣାବାଦକ ଅର୍ଫିଅସ୍ ବୀଣା ବଜାଇଲେ ଓ ଜାହାଜ ପବନବେଗରେ ଗ୍ଲଲିଲା । ଯଥାସମୟରେ ଜାସନ ନିଜ ଦେଶରେ ପହଞ୍ଚିଲେ ।

-

## ଏଣ୍ଟିଅସ୍ ଓ ବାମନଜାତି

ହଜାର ହଜାର ବର୍ଷ ତଳର କଥା । ଏଣ୍ଟିଅସ୍ ବୋଲି ଗୋଟିଏ ମଣିଷ ଥିଲା । ସେ ଆକାରରେ ଯେକୌଣସି ରାକ୍ଷସଠାରୁ ମଧ୍ୟ ବଡ଼ ହେବ । ତା' ଦେହରେ ବହୁତ ବଳ, କିନ୍ତୁ ତାର ସ୍ୱଭାବଟି ଭଲ । ତା ପାଖରେ ରହୁଥିଲେ ଲକ୍ଷ ଲକ୍ଷ ଟିକି ଟିକି ମଣିଷ । ଏଭଳି ଛୋଟ ଛୋଟ ମଣିଷ କି ଏଣ୍ଟିଅସ୍ ଭଳି ଏତେ ବଡ଼ ମଣିଷ କେହି କେବେ ଦେଖିନଥିବେ ।

ଏଣ୍ଟିଅସ୍ ଓ ଏହି ବାମନଜାତିର ଲୋକେ ଏକ ମାଆ ପୃଥିବୀ ଭିତରୁ ଜନ୍ମ । ତେଣୁ ଏଣ୍ଟିଅସ୍ ବଡ଼ଭାଇ, ବାମନମାନେ ସାନଭାଇ । ଆଫ୍ରିକା ମହାଦେଶର ଗୋଟିଏ ରାଜ୍ୟରେ ସମସ୍ତେ ରହୁଥାନ୍ତି । ବଡ଼ଭାଇ ସାନଭାଇ-ମାନଙ୍କୁ ଭାରି ସ୍ନେହ କରୁଥିଲେ । ସେମାନଙ୍କର ଦିନ ସୁଖରେ କଟିଯାଉଥିଲା ।

ବଡ଼ଭାଇ ଏତେ ଉଚ୍ଚ ଯେ ସେ ଠିଆହେଲାବେଳେ ତା' ମୁଣ୍ଡଟା ଆକାଶରେ ଲାଗିଲାପରି ଜଣାଯାଏ । ସାନଭାଇମାନେ ଦୂରବୀକ୍ଷଣଯନ୍ତ୍ର ନଧରିଲେ ତାର ମୁଣ୍ଡ ଦେଖିପାରନ୍ତିନାହିଁ । କୁହୁଡ଼ି ପଡ଼ୁଥିଲାବେଳେ ବହୁ କଷ୍ଟରେ କେବଳ ତା ଗୋଡ଼ ଦେଖିହୁଏ । ତାର ଗୋଟିଏ ମାତ୍ର ଆଖି, ଗୋଟିଏ ବଡ଼ ଶଗଡ଼ ଚକପରି କପାଳ ମଝିରେ ଜକ୍ ଜକ୍ ହେଉଥାଏ । ଦେହକୁ ଚାହିଁ ହାତ ଗୋଡ଼ । ଏଣ୍ଟିଅସ୍ ଚାଲିଲାବେଳେ ଗୋଟାଏ ପର୍ବତ ମାଡ଼ିଆସିଲାପରି ବୋଧହୁଏ ।

ଏଣ୍ଟିଅସ୍ ଗୋଟିଏ ଶାଳଗଛର ଗଣ୍ଡିକୁ ହାତରେ ବାଡ଼ିପରି ଧରି ଚାଲେ । ଏଇ ବାଡ଼ିଟି ପଚାଶଫୁଟ ଉଚ୍ଚ ଓ ତାର ଚୋଳେଇ ଆଠଫୁଟ ହେବ ।

ମାତ୍ର ବାମନମାନଙ୍କ ଆକାର ଖୁବ୍ ଛୋଟ । ସେମାନଙ୍କ ଭିତରେ କେହି ଛଅ-ସାତଇଞ୍ଚ ଉଚ୍ଚହେଲେ ତାକୁ ସବୁଠାରୁ ଡେଙ୍ଗାଲୋକ ବୋଲି ସେମାନେ ମନେକରନ୍ତି । ସେମାନଙ୍କ ଘରଗୁଡ଼ିକ ଦେଖିବାକୁ ଛୋଟ ଚଢ଼େଇ ପିଞ୍ଜରାପରି । ସେମାନଙ୍କ ସହରର ସବୁଠାରୁ ବଡ଼ ରାସ୍ତାର ଓସାର ତିନି ଫୁଟରୁ ବେଶି ନଥିଲା । ସବୁଠାରୁ ବଡ଼ ଦେଉଳର ଉଚ୍ଚତା ଚାରିଫୁଟ ହେବ । ସେମାନେ ଟିକି ଟିକି ବଳଦ ଯୋଚି ଟିକି ହଳରେ ଜମି ଚାଷ କରୁଥିଲେ । ଫସଲ ଅମଳକରି

ଖାଉଥିଲେ । ଆକାରରେ ଛୋଟ ହେଲେ ସୁଦ୍ଧା ସେମାନେ ଆମରିଭଳି ସବୁ କାମକରି ନିଜ ନିଜ ଅଭାବ ମେଣ୍ଟାଉଥିଲେ । ସେମାନଙ୍କ ଭିତରେ ସୈନ୍ୟ ମଧ୍ୟ ଥିଲେ ଓ ତରବାରି, ଢାଲ, ଧନୁଶର ପ୍ରଭୃତି ବ୍ୟବହାର କରୁଥିଲେ । ଜଣେ ସୈନ୍ୟର ତରବାରି ତିନିଇଞ୍ଚରୁ ଅଧିକ ଲମ୍ବ ନ ଥିଲା । ଏମାନଙ୍କର ପିଲାମାନେ ବି ସେହିପରି ଛୋଟ ଥିଲେ । ଆମର ଗୋଟିଏ ଜୋତାରେ ଦଶ ପନ୍ଦରଜଣ ବାମନ ପିଲା ନିଶ୍ଚିନ୍ତରେ ଶୋଇପାରନ୍ତେ ।

ବାମନମାନେ ବଡ଼ଭାଇ ସାଙ୍ଗରେ କଥାବାର୍ତ୍ତା କରିବାକୁ ଭଲପାଆନ୍ତି । ସେମାନେ ଠିଆହୋଇ ଉପରକୁ ଚାହିଁ ପାଟିକରନ୍ତି, "ଭାଇ କେମିତି ଅଛ ?" ଖୁବ୍ ପାଟି ନ କଲେ ଭାଇଙ୍କ କାନକୁ ସେକଥା ଶୁଣାଯାଏନାହିଁ । କେହି କେହି ଭଲ ଶୁଣାଯିବ ବୋଲି ପୁଙ୍ଗା ଧରି କଥାବାର୍ତ୍ତା କରନ୍ତି । ଏଣ୍ଡିଅସ୍ ସେମାନଙ୍କ କଥା ଶୁଣି ହସି ହସି କହେ, "ହଁ, ମୁଁ ବେଶ୍ ଭଲଅଛି । ତୁମେ ଭଲଅଛ ତ ?" ଏଣ୍ଡିଅସ୍ କଥାକହିଲେ ତା ସ୍ୱର ଘଡ଼ଘଡ଼ି ପରି ଶୁଣାଯାଏ । କେହି କେହି ସେ ସ୍ୱରରେ କାଲ ହୋଇଯାଇଥିବାର ଶୁଣାଅଛି । ସେ ଶବ୍ଦରେ ଘରଗୁଡ଼ାକ ଥରି-ଯାଏ, ମାତ୍ର କୁଟୀ ଓ ପକ୍ଷୀଘରରେ ତିଆରି ହୋଇଥିବାରୁ ଭାଙ୍ଗିପଡ଼େନାହିଁ ।

ଏଣ୍ଡିଅସ୍ ଇଚ୍ଛାକଲେ ଫୁଙ୍କିଦେଇ ହଜାର ହଜାର ଲୋକଙ୍କୁ ଉଡ଼ାଇଦେଇ ପାରନ୍ତା, ପାଦ ପକାଇ ଦେଲାମାତ୍ରେ ଗୋଟାଏ ଗୋଟାଏ ସହର ଚୂନା କରିପାରନ୍ତା । କିନ୍ତୁ ସେ ତାର ଟିକି ଭାଇମାନଙ୍କୁ ଭାରି ଭଲପାଏ । ସେମାନଙ୍କର ଯେପରି କିଛି ହେଲେ ଅନିଷ୍ଟ ନହୁଏ ସେଥିପାଇଁ ସାବଧାନଥାଏ । ଚାଲିଲା ବେଳେ ତଳକୁ ଚାହିଁ ଖୁବ୍ ସାବଧାନରେ ପାଦ ପକାଇବାକୁ ହୁଏ— କାଳେ କେଉଁଠି କିଏ ଯାଉଥିବ କି ପିଲାଏ ଖେଳୁଥିବେ । ଏଣ୍ଡିଅସ୍ ବାମନମାନଙ୍କୁ ଯେପରି ଆଦରକରୁଥିଲା, ସେମାନେ ତାକୁ ମଧ୍ୟ ସେହିପରି ଆଦର କରୁଥିଲେ ।

ବାମନମାନଙ୍କର ଦରକାର ପଡ଼ିଲାମାତ୍ରେ ଏଣ୍ଡିଅସ୍ ସାହାଯ୍ୟ କରିବାକୁ ବାହାରିପଡ଼ୁଥିଲା । ଏଇ ଟିକିଲୋକମାନେ ସେମାନଙ୍କ ଜାହାଜ ଚଳାଇ ନପାରିଲେ ସେ ଟିକିଏ ଫୁଙ୍କିଦେଉଥିଲା । କେଉଁଠି କଳ ଚଳାଇ ନ ପାରିଲେ ତାର ଆଙ୍ଗୁଠିଟିକିଏ ବାଜିଲାମାତ୍ରେ କଳ ଚାଲିଲା । ସେହିପରି କଠିନ କାମ ନପଡ଼ିଲେ ସେମାନେ ଏଣ୍ଡିଅସ୍‌ର ସାହାଯ୍ୟ ନେଉନଥିଲେ । ସେମାନେ ଆପେ ନିଜ କାମ କରିଯାଉଥିଲେ ।

ଯେତେବେଳେ ଏଣ୍ଡିଅସ୍‌ର ଗୃହପାଖେ ବାମନମାନେ ବୁଲୁଥାନ୍ତି ହୁଙ୍କା ତଳେ ପିମ୍ପୁଡ଼ି ବୁଲୁଥିବାପରି ମନେହୁଏ । ସେ ଶୋଇଥିବାବେଳେ ପିଲାମାନେ ନଶୁଣିରେ ତା ମୁହଁ ଉପରକୁ ଚଢ଼ି ଦାଢ଼ି ଭିତରେ ଲୁଚକାଳି ଖେଳନ୍ତି । କେହି କେହି ପିଲା ତା ଆଙ୍ଗୁଠି ସନ୍ଧିରେ ଲୁଚିଯାନ୍ତି ।

ପୂର୍ଣ୍ଣ୍ୟପର୍ବଦିନ ଖେଳ କୌତୁକ ହୁଏ । ଏଣ୍ଡିଅସ୍ ଶୋଇପଡ଼ିଲେ ଗୋଟିଏ ପାହାଡ଼ପରି ଦିଶେ । ତାଉପରେ ଦୌଡ଼ ପ୍ରତିଯୋଗିତା ହୁଏ । ବେଳେବେଳେ କେହି ଚଗଲା ଏଣ୍ଡିଅସ୍‌କୁ କହେ, "ଭାଇ, ତମ ଚମଡ଼ାଟା କେତେ ମୋଟ ?,' ଏଣ୍ଡିଅସ୍ ଉତ୍ତର କରେ, "ତୁ ପରୀକ୍ଷାକରି ଦେଖୁନୁ !" ସେ ତା ଖଣ୍ଡାଟା ଆଣି ଏଣ୍ଡିଅସ୍ ଦେହରେ ଭୁଷିଦିଏ । ଅବଶ୍ୟ ଏଥିରେ ତାର କିଛି କ୍ଷତ ହୁଏନାହିଁ, ଖାଲି ଟିକିଏ ଚିମୁଟିବାପରି ଲାଗେ । ଏମାନଙ୍କର ଏପରି ଖେଳ କୌତୁକରେ ଯେ କେହି ବିରକ୍ତ ହୋଇଉଠନ୍ତା, କିନ୍ତୁ ଏଣ୍ଡିଅସ୍ ଆଦୌ ରାଗେନାହିଁ । ସାନଭାଇମାନଙ୍କ ସାଥିରେ ଏଭଳି ଖେଳିବାରେ ତାର ଆନନ୍ଦ ।

ବାମନଗୁଡିକ ଆକାରରେ ଛୋଟହେଲେ କଅଣହେବ, ସେମାନଙ୍କ ମନରେ ବଡ଼ଭାଇ ପ୍ରତି ଭାରି ସ୍ନେହ । ସେମାନେ କହନ୍ତି, "ଆମ ଭାଇଭଳି କେହି ଦୁଃଖୀ ନାହାନ୍ତି । ଜଣେ ସାଙ୍ଗସାଥୀ ନାହିଁ ଯେ ଟିକିଏ ଦୁଃଖସୁଖ ହେବ । ପାଖରେ ସାହାଯ୍ୟ କରିବାକୁ କେହି ନାହିଁ । ବିଚରାର ମନରେ କେତେ କଷ୍ଟ ହେଉ-ନ ଥିବ ? ଆମେ ତା ମନ ଭୁଲାଇବାପାଇଁ ଚେଷ୍ଟା ନ କଲେ ହେବ କିପରି ?

ଦିନେ ଏଣ୍ଡିଅସ୍ ତା ପାଖରେ ବାଡ଼ିଖଣ୍ଡି ରଖିଦେଇ ଶୋଇଥିଲା । ଦୁଇ ବୃହଜାର ବାମନ ଏଣେତେଣେ ଆଖପାଖରେ ବୁଲୁଥିଲେ । ତା ଦେହଟା ରାଜ୍ୟର ଅଧେ ମାଡ଼ିବସିଥିଲା । ତା ଘୁଙ୍ଗୁଡ଼ିଶବ୍ଦ ମେଘର ଗର୍ଜ୍ଜନପରି ଶୁଭୁଥିଲା । ଜଣେ ବାମନ ତା କାନ୍ଧଉପରେ ଚଢ଼ି ଦୂରବୀକ୍ଷଣ ଯନ୍ତ୍ରରେ ଚାରିଆଡ଼ର ଦୃଶ୍ୟ ଦେଖୁଥିଲା । ଏକପାଖରେ ସେ ଗୋଟିଏ ଅଦ୍ଭୁତ ଦୃଶ୍ୟ ଦେଖିଲା । ଗୋଟାଏ ପର୍ବତ ଆଗକୁ ଆଗକୁ ଆସୁଥିବାପରି ତାକୁ ଜଣାପଡ଼ିଲା । ସେଦିଗରେ କୌଣସି ପର୍ବତ ନ ଥିଲା —ପର୍ବତଟାଏ ଆସିଲା କାହୁଁ ! ସେଇଟା ପୁଣି ଚାଲୁଛି କିପରି ?

ଲୋକଟି ସେହିପରି ଚାହିଁରହିଥାଏ । କିଛି ସମୟ ପରେ ପର୍ବତଟା ଟିକିଏ ପାଖକୁ ଆସିବାରୁ ସେ ଦେଖିଲା ଯେ ଏଇଟା ପର୍ବତ ନୁହେଁ, ଏଣ୍ଡିଅସ୍ ଭଳି ଗୋଟାଏ ବଡ଼ ମଣିଷ । ଉଚ୍ଚତାରେ ଏଣ୍ଡିଅସ୍‌ଠାରୁ ଟିକିଏ କମ୍ ହେଲେହେଁ

ଖୁବ୍ ବଡ଼ ମଣିଷଟାଏ । ସେ ଲୋକଟି ଏଣ୍ଟିଅସ୍‌ର କାନପାଖକୁ ଦଉଡ଼ଯାଇ ଡାକପକାଇଲା, "ଭାଇ ଉଠ, ଉଠ । ଡମରଭଳି କଏ ଗୋଟାଏ ଆସୁଛି ।"

ବହୁତ ଡାକ ପରେ ଏଣ୍ଟିଅସ୍ କହିଲା, "ଓଃ, କାହିଁକି ଗୁଣୁଗୁଣୁ ହେଉଛୁ । ଦେଖୁନୁ, ମତେ ନିଦମାଡ଼ୁଛି ।"

ଏଣେ ସେ ଲୋକଟା ପାଖେଇ ଆସୁଥାଏ । ତା' ମୁଣ୍ଡର ଟୋପି ଉପରେ ସୂର୍ଯ୍ୟକିରଣ ପଡ଼ି ଚକ୍ ଚକ୍ ଦିଶୁଥାଏ । ତା ଦେହର ସାଞ୍ଜୁ ମଧ୍ୟ ସେହିପରି ଚକ୍‌ଚକ୍ କରୁଥାଏ । ପିଠିଉପରେ ସେ ଗୋଟାଏ ସିଂହର ଛାଲ ପକାଇଥାଏ । ଡାହାଣ କାନ୍ଧରେ ସେ ଯେଉଁ ଗଦା ଧରିଥିଲା, ସେଇଟା ଏଣ୍ଟିଅସ୍‌ର ବାଡ଼ିଠାରୁ ଆହୁରି ଲମ୍ବ । ତାର ଅଣ୍ଟାରେ ଯୋଟାଏ ଖଣ୍ଡା ଓହଳଥାଏ ।

ଏପରି ଏକ ପ୍ରକାଣ୍ଡ ମଣିଷକୁ ଦେଖି ବାମନଜାତିର ଲୋକେ ଚିତ୍କାର କରିଉଠିଲେ । ଶେଷରେ ଏଣ୍ଟିଅସ୍ ଆଖି ମଳି ମଳି ଉଠି ବସିଲା । ହାଇମାରି ଏପାଖ ସେପାଖକୁ ଚାହିଁଲା । ଏହି ନୂଆ ମଣିଷ ଉପରେ ତାର ନଜର ପଡ଼ିଲା । ସେ ଠେଙ୍ଗାଟା ଧରି କେତେ ପାହୁଣ୍ଡରେ ମାଟି ତା ଆଡ଼କୁ ତିନି ଚାରି ମାଇଲ ଚାଲିଗଲା । ଏଣ୍ଟିଅସ୍ ଗର୍ଜିଉଠିଲା, "ତୁ କିଏ ? ତୁ କାହିଁକି ଏଠିକି ଆସିଛୁ ?" କଥା ସାଙ୍ଗେ ସାଙ୍ଗେ ତା ଠେଙ୍ଗାଟା ହାଲୁଥାଏ ।

ଅସୁର କିଛି ନକହି ଠିଆହୋଇରହିଲା । ଏଣ୍ଟିଅସ୍ ପୁଣି କହିଲା, "କିରେ, ତୋତେ କଣ ଶୁଭୁନାହିଁ ? ତୋ ନାଁ କଣ ? ତୁ ମୋ ରାଜ୍ୟରେ ପଶିଲୁ କାହିଁକି ?"

ଏବେ ଅସୁରର ତୁଣ୍ଡ ଫିଟିଲା । ସେ ଧୀରସ୍ଥିର ଭାବରେ କହିଲା, "ମୁଁ ଦେଖୁଛି ତୁ ବଡ଼ ଅଭଦ୍ର ଲୋକ । ମୁଁ ଏଠୁ ଯିବାଆଗରୁ ତୋତେ ଭଦ୍ରତା ଶିଖାଇଦେବି । ମୋ ନାଁ ହେଉଛି ହରକ୍ୟୁଲସ୍ । ମୁଁ ଯାଉଛି ସୁନାର ଆତଫଳ ଆଣିବାକୁ । ଆମ ରାଜାଙ୍କ ପାଇଁ ସେଥିରୁ ତିନୋଟି ଫଳ ଆଣିବି ।"

ହରକ୍ୟୁଲସ୍ ବଳକଥା ଏଣ୍ଟିଅସ୍ ଆଗରୁ ଶୁଣିଥିଲା । ତାଭଳି ବା ତା'ଠାରୁ ଅଧିକ ବଳୁଆ ହରକ୍ୟୁଲସ୍‌କୁ ଏଣ୍ଟିଅସ୍‌ର ଭାରି ଘୃଣା । ଏବେ ତାକୁ ଆଗରେ ଦେଖି ସେ ରାଗିଉଠି କହିଲା,"ନା, ଆଉ ଆଗକୁ ଯିବାକୁ ମୁଁ ତୋତେ ଛାଡ଼ିଦେବି ନାହିଁ । ପଛକୁ ଫେରିଯିବାକୁ ମଧ୍ୟ ଦେବିନାହିଁ ।"

ହରକ୍ୟୁଲସ୍ କହିଲା, "ମୋର ଯୁଆଡ଼େ ଇଚ୍ଛା ମୁଁ ଯିବି । ତୁ ମତେ ବନ୍ଦ କରିବାକୁ କିଏ ? କିପରି ଅଟକାଇ ରଖିବୁ ଦେଖିବି ।"

ଏଣ୍ଟିଅସ୍ ନିଜକୁ ଖୁବ୍ ବଳୁଆ ମନେକରୁଥିଲା । ସେଥିରେ ଏକ ବିଶେଷ କାରଣ ମଧ୍ୟ ଥିଲା । ସେ ହେଉଛି ପୃଥିବୀମାତାଙ୍କ ପୁଅ । ତାକୁ ଶ୍ରଦ୍ଧାକରି



ପୃଥିବୀମାତା ବରଦେଇଥିଲେ ଯେ—ତୁ ଯେତେଥର ମୋତେ ଛୁଇଁଥିବୁ, ତୋର ବଳ ପ୍ରତିଥର ଦଶଗୁଣଲେଖାଏଁ ବଢ଼ିଯାଉଥିବ । ଏହି ହେତୁରୁ ଏଣ୍ଟିଅସ୍

ଦଶ-ପନ୍ଦର ମାଇଲ ଚାଲିଗଲେ ହାଲିଆ ହୋଇପଡ଼େନାହିଁ, ଓଲଟି ତାର ବଳ ଶହେଦୁଇଶହଗୁଣ ବଢ଼ିଯାଏ । ସେହିପରି ସେ ଭୂଇଁରେ ଶୋଇପଡ଼ିଲେ, ଉଠିଲାବେଳକୁ ତାର ବଳ ବଢ଼ିଯାଇଥାଏ । ଏଥିରେ ଏଣ୍ଟିଅସ୍ କାହାକୁ ଖାତିର କରିବ କାହିଁକି ?

ହରକ୍ୟୁଲସ୍‌ର ଧମକ ଶୁଣି ଏଣ୍ଟିଅସ୍‌ର ରାଗ ବଢ଼ିଗଲା । ସେ ତାର ଖଣ୍ଡା ବାହାରକରି କହିଲା, "ତୋତେ କିପରି ଅଟକାଇବି ? ମୋର ଏଇ ଖଣ୍ଡାକୁ ଦେଖ । ଏଇଥିରେ ତୋ ମୁଣ୍ଡକୁ କାଟିଦେବି । ମୋର ବଳ ତୋ'ଠାରୁ ପଚିଶଗୁଣ ବେଶୀ । ଥରେ ମାଟିକୁ ଗୋଇଠାଟିଏ ମାରିଦେଲେ ମୋ ବଳ ଦଶଗୁଣ ହୋଇଯିବ । ତୋତେ ଏପରି ଶାସ୍ତି ଦେବି ଯେ, ଖଣ୍ଡା ଆଉ ଗଦା ଫିଙ୍ଗି ଦେଇ ତୁ ମୋ ଶରଣ ପଶିବୁ ।"

ଏଣ୍ଟିଅସ୍ ଓ ହରକ୍ୟୁଲସ୍ ନିଜନିଜର ଖଣ୍ଡାଧରି ଲଢ଼େଇରେ ମାତିଗଲେ । କିଛିସମୟ ଲଢ଼େଇରେ ଦୁହିଁଙ୍କ ଖଣ୍ଡା ଭାଙ୍ଗିଗଲା । ତା' ପରେ ଏଣ୍ଟିଅସ୍ ତାର ଠେଙ୍ଗା ଉଠାଇ ପାହାରେ ପିଟିଲା । ହରକ୍ୟୁଲସ୍ ତା ଗଦାଟା ଦେଖାଇଦେଲା, ତେଣୁ ପାହାରଟା ତା ଦେହରେ ନବାଜି ଗଦାରେ ବାଜିଲା । ତହୁଁ ହରକ୍ୟୁଲସ୍ ତା ଗଦାରେ ଏଣ୍ଟିଅସ୍‌ର ମୁଣ୍ଡକୁ ଏପରି ପାହାରେ ପିଟିଲା ଯେ ସେ ତଳେ ପଡ଼ିଗଲା । ବଡ଼ଭାଇର ଏ ଦଶା ଦେଖି ବାମନମାନେ କାନ୍ଦି ଉଠିଲେ । ପୃଥିବୀରେ ଯେ ତାଙ୍କ ଭାଇଠାରୁ କେହି ବଳୁଆ ଥାଇପାରେ, ଏହା ସେମାନେ କଳ୍ପନା କରିନଥିଲେ । ଏବେ ସେମାନେ ହାହାକାର କରିବାକୁ ଲାଗିଲେ ।

ଏଣ୍ଟିଅସ୍ ଏପରି ଏକ ପାହାର ଖାଇଲେ ସୁଦ୍ଧା ପୁଣି ଉଠିପଡ଼ିଲା । ତାର ବଳ ଦଶଗୁଣ ବଢ଼ିଯାଇଥାଏ । ସେ ଠେଙ୍ଗାଧରି ହରକ୍ୟୁଲସ୍‌କୁ ପୁଣି ପିଟିବାକୁ ବସିଲା । ଏଥର ମଧ୍ୟ ଲକ୍ଷ୍ୟ ଠିକ୍ ରହିଲା ନାହିଁ । ଠେଙ୍ଗାଟା ହରକ୍ୟୁଲସ୍‌ର ଦେହରେ ନ ବାଜି ଭୂଇଁରେ ବାଜି କେତେଦୂରଯାଏ ପୋତି ହୋଇଗଲା । ମାଟିଭିତରୁ ସେ ଠେଙ୍ଗାଟାକୁ ଟାଣି ବାହାର କରୁ କରୁ ହରକ୍ୟୁଲସ୍ ତାକୁ ଗଦାରେ ପିଟିଦେଇଗଲା । ଏଣ୍ଟିଅସ୍ ରାଗରେ ଏଡ଼େ ଗର୍ଜନ କଲା ଯେ ସେ ରାଜ୍ୟଟା ଥରିଉଠିଲା । ବାମନମାନଙ୍କ କଥା କହିଲେ ନସରେ । ଏ ଦୁହିଁଙ୍କର ପିଟାପିଟି, ଗର୍ଜନ ତର୍ଜନରେ ଭୂମିକମ୍ପ ହେବାରୁ ସେମାନଙ୍କର କେତେ ସହର ଭୂଇଁରେ ମିଶିଗଲା । କେତେ ଲୋକ ଭୟରେ

ମୂର୍ଚ୍ଛା ହୋଇଗଲେ । ଆଉ କେତେକ ଯୁଦ୍ଧ କରିବାକୁ ଡାକରା ଛାଡ଼ିଲେ । ଲକ୍ଷ ଲକ୍ଷ ଲୋକଙ୍କର କୋଳାହଳ ଏ ଦୁହିଁଙ୍କର ରଡ଼ି ଭିତରେ ଉଭେଇଗଲା ।

ଏଣ୍ଟିଅସ୍ ଆଖିଟା ରାଗରେ ନାଲପଡ଼ିଗଲା । ସେ ଭୂଇଁରୁ ଉଠିଲାମାତ୍ରେ ଦୁଇ ଚାରି କୁଦା ଡେଇଁଲା । ଏହାଦ୍ୱାରା ତା'ର ବଳ ବଢ଼ିଉଠିଲା । ସେ ଗର୍ଜନ କରି ଡାକିଲା, "ଆ ଆ, ତୁ କେଉଁଠେ ଆଉ ଦେଖିବ ।" ହରକ୍ୟୁଲସ୍ ଦେଖିଲା, ଏଣ୍ଟିଅସ୍‌କୁ ଭୂଇଁଉପରେ ପକାଇଲେ ଲାଭ ନାହିଁ । ଏଥିରେ ବରଂ ତା'ର ବଳ ବେଶି ହେଉଛି । ତେଣୁ ସେ ତା'ର ଗଦାଟା ତଳେ ଫିଙ୍ଗିଦେଇ ମଲ୍ଲଯୁଦ୍ଧ କରିବାକୁ ବାହାରିପଡ଼ିଲା । ଏଣ୍ଟିଅସ୍ କହିଲା, "ମୁଁ କଅଣ ସେଥିକି ଡରେ ?"

ଏଣ୍ଟିଅସ୍ କୁଦାମାରି ଡେଇଁପଡ଼ି ହରକ୍ୟୁଲସ୍‌କୁ ମାଡ଼ିବସିବାକୁ ଗଲା । ସେତେବେଳକୁ ତା'ର ବଳ କେତେଶହ ଗୁଣ ହୋଇଯାଇଥାଏ । ହରକ୍ୟୁଲସ୍ ଭାରି ଚାଲାଖ । ସେ ସୁବିଧା ଉଣ୍ଡୁଥାଏ । ଏଣ୍ଟିଅସ୍ ତା ଆଡ଼କୁ ମାଡ଼ିଆସିଲା ବେଳକୁ ସେ ଏଣ୍ଟିଅସ୍‌ର ଅଣ୍ଟାକୁ ଧରି ମୁଣ୍ଡ ଉପରକୁ ଟେକିଦେଲା । ସେ ଏକ ବିଚିତ୍ର ଦୃଶ୍ୟ । ହରକ୍ୟୁଲସ୍‌ର ମୁଣ୍ଡଉପରକୁ କେତେ ଉଚ୍ଚରେ ଏଣ୍ଟିଅସ୍ ଗୋଟାଏ ପର୍ବତପରି ରହି ହାତଗୋଡ଼ ପିଟିହେଉଥାଏ, କିନ୍ତୁ ହରକ୍ୟୁଲସ୍ ତାକୁ ନ ଛାଡ଼ି ସେହିପରି ଧରିଥାଏ । ମାଟିଉପରୁ ଛାଡ଼ି ଶୂନ୍ୟରେ ଏତେ ସମୟ ରହିବାରୁ ଏଣ୍ଟିଅସ୍‌ର ବଳ କମିଆସିଲା । ହାତ ଗୋଡ଼ ଛାଟିବାକୁ ମଧ୍ୟ ତାର ବଳ ରହିଲା ନାହିଁ । ଅସଲ କଥା ହେଲା, ପ୍ରତି ପାଞ୍ଚ ମିନଟରେ ଅନ୍ତତଃ ଥରେ ପୃଥିବୀକୁ ନଛୁଇଁଲେ ଏଣ୍ଟିଅସ୍‌ର ବଳ ଦଶଭାଗରୁ ଭାଗେ ହୋଇଯାଏ । ଯେତେବେଳେ ଏଣ୍ଟିଅସ୍ ଏକବାରେ ଦୁର୍ବଳ ହୋଇପଡ଼ିଲା, ହାତଗୋଡ଼ ହଲେଇପାରିଲା ନାହିଁ, ସେତେବେଳେ ହରକ୍ୟୁଲସ୍ ତାକୁ ଦୂରକୁ ଫିଙ୍ଗିଦେଲା । ମାଇଲଏ ଦୂରରେ ସେ ଗୋଟାଏ ପାହାଡ଼ଉପରେ ପଡ଼ିଲା ଓ ତାର ପ୍ରାଣବାୟୁ ବାହାରିଗଲା ।

ବାମନଜାତିର ଲୋକମାନେ ବଡ଼ଭାଇଙ୍କର ଏ ଦଶା ଦେଖି କାନ୍ଦିଉଠିଲେ । ସେମାନଙ୍କ ଆଖିରୁ ଧାର ଧାର ହୋଇ ଲୁହ ବୋହିଗଲା । କିନ୍ତୁ ହରକ୍ୟୁଲସ୍‌ର ସେଆଡ଼େ ଦୃଷ୍ଟି ନାହିଁ । ସେମାନଙ୍କ କାନ୍ଦଣା ଶୁଣି ସେ ମନେକଲା, କେଉଁଠି ଚଢ଼େଇଗୁଡ଼ାଏ ଚେଁ ଚେଁ ହେଉଛନ୍ତି । ଏଣ୍ଟିଅସ୍ ସାଥିରେ ଲଢ଼େଇକରି ତାକୁ ହାଲିଆ ଲାଗୁଥିଲା । ସେ ସିଂହ ଛାଲଟା ପାରି ତା ଉପରେ ଶୋଇପଡ଼ିଲା ।

ବାମନମାନେ ଦେଖିଲେ, ଅସୁରଟା ଶୋଇଛି । ସେମାନେ ଗୋଟାଏ ବଡ଼ ସଭା କଲେ । ହଜାର ହଜାର ସଂଖ୍ୟାରେ ବାମନଜାତିର ଲୋକ ଆସି ସେ ସଭାରେ ଯୋଗଦେଲେ । ଏତେ ବଡ଼ ସଭା ସେ ରାଜ୍ୟରେ ଆଗରୁ କେବେ ହୋଇନଥିଲା । ଜଣେ ବକ୍ତା ମଞ୍ଚଉପରକୁ ଯାଇ ଉଚ୍ଚସ୍ୱରରେ ବକ୍ତୃତା ଦେଲେ, "ଭାଇମାନେ ଆଜ ଏଠାରେ ଯେଉଁ ଦୁଃଖଦାୟକ ଘଟଣା ଘଟିଗଲା, ତାହା ଆପଣମାନେ ନିଜଆଖିରେ ଦେଖିଛନ୍ତି । ଆମର ବଡ଼ଭାଇ ଏଣ୍ଟିଅସ୍ ଏଇଠାରେ ମରିପଡ଼ିଛନ୍ତି । ଗୋଟାଏ ବିଦେଶୀ ଶତ୍ରୁ ଅନ୍ୟାୟ ଯୁଦ୍ଧରେ ତାଙ୍କୁ ହତ୍ୟା କରିଛି । ଏବେ ସେହି ଦୁଷ୍ଟ ଶତ୍ରୁ ବିଜୟଗର୍ବରେ ଏଠାରେ ଶୋଇରହିଛି । ଏଣ୍ଟିଅସ୍ ଥିଲେ ଆମର ବଡ଼ଭାଇ । ସେ ଚିରକାଳ ଆମ ସହିତ ଶାନ୍ତିରେ ରହିଆସିଥିଲେ । ଆପଣମାନେ ଜାଣନ୍ତି, ଝଡ଼ ବର୍ଷାବେଳେ ସେ ଛତାହୋଇ ଆମ ସହରକୁ କେତେଥର ରକ୍ଷାକରିଛନ୍ତି । ଆମର ପିଲାମାନେ ତାଙ୍କ ବାଳରେ, ତାଙ୍କ ଦାଢ଼ିରେ ଖେଳ କେତେ ଆନନ୍ଦ ପାଉଥିଲେ । ତାଙ୍କର ଆମ ପ୍ରତି ଦୟା ଭୁଲିହେବନାହିଁ । କାଳେ କେହି ତାଙ୍କ ପାଦତଳେ ଚପିହୋଇଯିବ, ଏହି ଭୟରେ ସେ ତଳକୁ ଚାହିଁ ଚାହିଁ ଧୀରେ ଧୀରେ ପାଦ ପକାଉଥିଲେ । ତାଙ୍କର ଦୟା, ସ୍ନେହ ଆମର ଅପାସୋରା । ଶତ୍ରୁକୁ ମାରି ତାଙ୍କ ମୃତ୍ୟୁର ପ୍ରତିଶୋଧ ନେବାକୁ ପଡ଼ିବ । ଦୋଷୀକୁ ଦଣ୍ଡଦେବାକୁ ହେବ । ଆମ ଦେଶରେ ବୀରର ଅଭାବ ନାହିଁ । ଶତ୍ରୁପାଖରେ ଆମ ଜାତି କେବେ ମୁଣ୍ଡ ନୁଆଁଇନାହିଁ । ଆସ ଆଜି ଆମ ସାହସର, ଆମ ବୀରତ୍ୱର ପରିଚୟ ଦେବା । ଶତ୍ରୁକୁ ଧ୍ୱଂସ କରିବା । ତାର ହାଡ଼ ଆମ ଏଣ୍ଟିଅସ୍‌ର ହାଡ଼ପାଖରେ ଜମାହୋଇ ରହିବ । ଆମର ଏଇ କୀର୍ତ୍ତି ସୁନାର ଅକ୍ଷରରେ ଆମ ଇତିହାସରେ ଲେଖାହୋଇ ରହିବ । ଆମର ପୁଅ ନାତିମାନେ ତାହା ପଢ଼ି ପୂର୍ବପୁରୁଷଙ୍କ ବୀରତ୍ୱ କଥା ଜାଣିବେ ।"

ସଭାରେ ବାରମ୍ବାର ହାତତାଳି ଶୁଣାଯାଉଥାଏ । ବକ୍ତା ନିଜର ଅଣ୍ଟାରୁ ତରବାରି ବାହାରକରି ମୁଣ୍ଡ ଉପରକୁ ଟେକି କହିଲେ, "ଆମର ତରବାରି ଆଜି ଶତ୍ରୁର ରକ୍ତ ଚାହେଁ । ଆସ, ସମସ୍ତେ ମିଶି ଶତ୍ରୁକୁ ଶେଷକରିବା । ଯୁଦ୍ଧ କରି ତାକୁ ମାରିବା ନହେଲେ ମରିବା । ଆପଣମାନେ ଯଦି ଭୟକରି ଯୁଦ୍ଧକୁ ବାହାରିବେନାହିଁ, ତେବେ ମୁଁ ଏକାକୀ ଏହି ଖଣ୍ଡାଧରି ସେ ଦୁଷ୍ଟସଙ୍ଗେ ଯୁଦ୍ଧ କରିବି । ଧର୍ମର ଜୟ ସୁନିଶ୍ଚିତ ।"

ଏହି ବକ୍ତାଙ୍କ ପରେ ଆଉ କେତେଜଣ ବକ୍ତୃତା ଦେଇ ସେଇକଥା କହିଲେ । ଅସୁର ଶୋଇଥିବାବେଳେ ତାକୁ ମାରିଦେବା ଠିକ୍ କରାଗଲା । ସଙ୍ଗେ ସଙ୍ଗେ ଆକ୍ରମଣର ବ୍ୟବସ୍ଥା ହେଲା । କୋଡ଼ିଏହଜାର ସୈନ୍ୟ ଧନୁରେ ଶର ଯୋଖି ଆଗେ ଆଗେ ଚାଲିଲେ । ଆଉ କୋଡ଼ିଏହଜାର ସୈନ୍ୟଙ୍କୁ ଆଦେଶ ଦିଆଗଲା ଯେ ସେମାନେ ନଡ଼ା କୁଟାର ବୋଝ ନେଇ ଆଗ ସେ ଅସୁରର ନାକ ମୁହଁ ବନ୍ଦକରିଦେବେ । ତାହାହେଲେ ସେ ନିଃଶ୍ୱାସ ନେଇପାରିବନାହିଁ । କିନ୍ତୁ ଏ ଆଦେଶ ପାଳନ କରାଯାଇପାରିଲା ନାହିଁ । ସୈନ୍ୟମାନେ ତାର ମୁହଁ ପାଖକୁ ଗଲାମାତ୍ରେ ତା'ର ନିଃଶ୍ୱାସ ପବନରେ ଉଡ଼ିଗଲେ—କୁଟାରେ ତା'ର ନାକ ମୁହଁ ବନ୍ଦକରିବେ କେତେବେଳେ ?

ନେତାମାନେ ମିଳି ପୁଣି ଏକ ସଭା କଲେ । ଏଥିରେ ସ୍ଥିରହେଲା ଯେ ସୈନ୍ୟମାନେ ରାଜ୍ୟର କାଠିକୁଟା, ଶୁଖିଲା କାଠ ଆଦି ସଂଗ୍ରହ କରି ଆଣନ୍ତୁ । ସେସବୁ ଶତ୍ରୁର ମୁଣ୍ଡ ଚାରିପାଖେ ଜମାକରାଇ ସେଥିରେ ନିଆଁ ଲଗାଇ ଦିଆଯିବ । ନିଆଁରେ ସେ ପୋଡ଼ିହୋଇ ମରିବ । ଶତ୍ରୁ ଉଠିବାକୁ ଚେଷ୍ଟା କଲେ ସବୁ ସୈନ୍ୟ ଏକାବେଳକେ ତା ଉପରକୁ ଶର ମାରିବେ ।

ଏହିପରି ବ୍ୟବସ୍ଥା ହେଲା । ସୈନ୍ୟମାନେ ବହୁତ କାଠିକୁଟା ଆଣି ହରକ୍ୟୁଲସ୍‌ର ମୁଣ୍ଡ ଚାରିପାଖେ ଜମାକଲେ । ଖୁବ୍ ସାହସୀ କେତେଜଣ ସୈନ୍ୟ ଯାଇ ସେଥିରେ ନିଆଁ ଲଗାଇଦେଲେ । ନିଆଁର ତାତି ଦେହରେ ବାଜିଲାକ୍ଷଣି ହରକ୍ୟୁଲେସ୍ ଉଠି ବସିପଡ଼ିଲା । ସେ ଚାରିଆଡ଼କୁ ଚାହିଁ କହିଲା, "ଏ କଅଣ ?" ଏଣେ କୋଡ଼ିଏହଜାର ସୈନ୍ୟ ଏକସଙ୍ଗରେ ହରକ୍ୟୁଲେସ୍‌ର ମୁହଁଉପରକୁ ଶର ମାରିଲେ । କିନ୍ତୁ ତାର ମୋଟା ଚମଡ଼ା ଭିତରକୁ ଶର ପଶିପାରିଲା ନାହିଁ । ଗୋଟାଏ ଦୁଇଟା ତା ଦେହରେ ଲାଗିରହିଲା ମାତ୍ର । ଦେହରେ କଣ୍ଟା ବାଜିଗଲା ପରି ସେ ଅନୁଭବ କଲା ।

ସହସ୍ର ସହସ୍ର ବାମନ ସୈନ୍ୟଙ୍କ କଣ୍ଠରୁ ଶୁଣାଗଲା, "ସଇତାନ, ତୁ ଆମ ଭାଇ ଏଣ୍ଟିଅସ୍‌ର ପ୍ରାଣ ନେଇଛୁ । ଆମେ ତାର ପ୍ରତିଶୋଧ ନେବୁ । ଆମର ଶାରଜାତି ଏ ଅପମାନ ସହିନପାରେ, ଆମେ ଯୁଦ୍ଧ ଘୋଷଣା କରୁଛୁ ।"

ହରକ୍ୟୁଲସ୍ ଦେଖିଲା, ତା ପାଦପାଖରେ ହଜାର ହଜାର ପୋକପରି ମନୁଷ୍ୟ, ଠିକ ଠିକ ଧନୁରେ ଶର ମାରିବାକୁ ଠିଆହୋଇ ରହିଛନ୍ତି । ସେ

ହାତବଢ଼ାଇ ଗୋଟାଏ ସୈନ୍ୟକୁ ଦୁଇଆଙ୍ଗୁଠିରେ ଧରିନେଇ ତାର ବାଁହାତ ପାପୁଲିଉପରେ ରଖିଦେଲା । ଦୈବାତ୍ ଏହି ସୈନ୍ୟଟି ହେଉଛି ସେହି ବକ୍ତା, ଯିଏ ପ୍ରତିଜ୍ଞା କରିଥିଲା—ଏକାକୀ ଯୁଦ୍ଧକରି ହରକ୍ୟୁଲିସ୍‌କୁ ମାରିବ ।



ହରକ୍ୟୁଲିସ୍ ବିସ୍ମିତ ହୋଇ ପଚାରିଲେ, "ତୁ କଅଣ ଚାହୁଁ ?"

ବୀର ସୈନିକଟି ଉତ୍ତର କଲା, "ମୁଁ ତୋର ଶତ୍ରୁ । ଆମ ଜାତିର ବୀର, ଆମର ଭାଇ ଏଣ୍ଟିଅସ୍‌କୁ ତୁ ମାରିଛୁ— ଆମେ ତୋତେ ମାରିବୁ ବୋଲି ପ୍ରତିଜ୍ଞା କରିଛୁ । ଆ, ମୋ ସଙ୍ଗେ ଯୁଦ୍ଧକର ।"

ହରକ୍ୟୁଲସ୍ ଏହି ବକ୍ତୃତା ଶୁଣି ଯେତିକି ବିସ୍ମିତ ହେଲା, ସେତିକି ଆନନ୍ଦିତ ହେଲା । ବାମନର ଦେହଟି ଛୋଟ ହେଲେ ମଧ୍ୟ ତା ମନଟି ଛୋଟ ନୁହେଁ । ତା'ର ମଧ୍ୟ ସ୍ନେହ, ଶ୍ରଦ୍ଧା ସଙ୍ଗେ ପ୍ରତିଶୋଧ ନେବା ଓ ବୀରତ୍ୱ ପ୍ରଭୃତି ଗୁଣ ଅଛି । ହରକ୍ୟୁଲସ୍‌କୁ ହସମାଡ଼ିଲା ।

ସେ କହିଲା, "ଜୀବନରେ କେତେ ଆଶ୍ଚର୍ଯ୍ୟ କଥା ଦେଖିଛି । କାହାର ନଅଟା ମୁଣ୍ଡ, କାହାର ଛଅଟା ଗୋଡ଼, କାହାର ଦେହଟା ଘୋଡ଼ାର କିନ୍ତୁ ମୁଣ୍ଡଟା ମଣିଷର । କିନ୍ତୁ ଆଜି ଏ ଯେଉଁ ବିଚିତ୍ର ମନୁଷ୍ୟ ଦେଖିଲି, ସେପରି କେବେ ଦେଖିନଥିଲି । ତୋର ଦେହଟା ଛୋଟ ହେଲେହେଁ ମନଟା ଛୋଟ ନୁହେଁ । ଆଚ୍ଛା କହିଲୁ , ତୋ ମନଟା କେତେ ବଡ଼ ?"

ସୈନିକଟି ଉତ୍ତର କଲା, "ମୋ ମନ ତୋ ମନଠାରୁ ଛୋଟ ନୁହେଁ, ବରଂ ବଡ଼ ।"

ଏତେ ସାମାନ୍ୟ ଜୀବଟିର ସାହସ, ବୀରତ୍ୱ ଓ ଉଦାରଭାବ ଦେଖି ହରକ୍ୟୁଲସ୍‌ର ମନ ତରଳିଗଲା । ସେ ଭାବିଲା, ଛୋଟ ହେଲେବି ସେ ମଧ୍ୟ ମନୁଷ୍ୟ । ସେ ମୋର ଭାଇ । ସେ ସୈନ୍ୟମାନଙ୍କ ପାଖେ ଆଣ୍ଠୋଇପଡ଼ି କହିଲା, "ମାନୁଛି ତୁମେମାନେ ଏକ ବୀରଜାତି । ତୁମର ଛୋଟ ଦେହରେ ଯେଉଁ ବିରାଟ ମନ ଅଛି ତାର ତୁଳନା ମିଳିବ ନାହିଁ । ତୁମର କ୍ଷତି କରିବା ମୋ ପକ୍ଷରେ ଘୋର ଅନ୍ୟାୟ ହେବ । ମୁଁ ନଜାଣି ତୁମର ଭାଇଙ୍କୁ ମାରି ଯେଉଁ ଅନ୍ୟାୟ କରିଛି, ସେଥିପାଇଁ କ୍ଷମା ମାଗୁଛି । ତୁମେମାନେ ଶାନ୍ତିରେ ରହ । ମୁଁ ତୁମ ଦେଶ ଛାଡ଼ି ଚାଲିଯିବି । କାଳେ କାହାରି ଉପରେ ପାଦ ପଡ଼ିଯିବ, ସେଥିପାଇଁ ସାବଧାନ ରହିବି । ମୋତେ ବିଦାୟ ଦିଅ, ମୁଁ ଏଣିକି ତୁମର ବନ୍ଧୁ— ଶତ୍ରୁ ନୁହେଁ ।"

ହରକ୍ୟୁଲସ୍ ତାର ଗଦାଧରି ଯିବାକୁ ବାହାରିଲା । ସେ ହସି ହସି କହିଲା, "ଜୀବନରେ କେତେ ରାକ୍ଷସଙ୍କ ସଙ୍ଗେ ଯୁଦ୍ଧକରି ଜିଣିଥିଲି, କିନ୍ତୁ ଆଜି ଏହି ଛୋଟ ଜୀବଙ୍କ ପାଖେ ପ୍ରଥମକରି ହାରିଲି ।"